


ଲୋକସେବା ଭବନ ପରିସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା
**ମିଲେଟ୍ ଶକ୍ତି କାଫେର ଉଦ୍‌ଘାଟନ ।**



ହକି ବିଶ୍ୱକପ୍ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା
ଭୁବନେଶ୍ୱର କଳିଙ୍ଗ ଷ୍ଟାଡ଼ିୟମ୍‌ଠାରେ ମିଲେଟ୍ ଶକ୍ତି ଆଉଟ୍‌ଲେଟ୍‌ର ଶୁଭାରମ୍ଭ ।

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**November - 2023**

୮୦ ଭାଗ ୪ର୍ଥ ସଂଖ୍ୟା କାର୍ତ୍ତିକ-ମାର୍ଗଶିର ନଭେମ୍ବର-୨୦୨୩





ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : uporipr@gmail.com, ୱେବ୍‌ସାଇଟ୍ : https://odisha.gov.in

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

**ନଭେମ୍ବର–୨୦୨୩**
**(ମିଲେଟ୍ସ ବିଶେଷାଙ୍କ)**



❖ ❖ ❖

# ଅନ୍ତର୍ଜାତୀୟ ମିଲେଟ୍ସ ସମ୍ମିଳନୀ ୨୦୨୩ ଅବସରରେ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ବାର୍ତ୍ତା



ବହୁ ପ୍ରାଚୀନ ସମୟରୁ ଆମର ଖାଦ୍ୟ ଶୈଳୀରେ ପୁଷ୍ଟିଶସ୍ୟ ବା ମିଲେଟ୍ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରି ଆସିଛି । ଓଡ଼ିଶାରେ ଏହି ପୁଷ୍ଟିଶସ୍ୟ ମୁଖ୍ୟତଃ ଆମ ଆଦିବାସୀ ସମ୍ପ୍ରଦାୟଙ୍କ ଦ୍ୱାରା ଚାଷ କରାଯାଇ ଆସୁଅଛି । ସେମାନେ ଆଜି ବି ଏହି ମୂଲ୍ୟବାନ ଶସ୍ୟ ଚାଷକୁ ସୁନିଶ୍ଚିତ କରିପାରିଛନ୍ତି ।

ମିଲେଟ୍‌ର ଉତ୍ପାଦନ ଓ ଖାଦ୍ୟ ବ୍ୟବହାରକୁ ପ୍ରୋତ୍ସାହିତ କରିବା ପାଇଁ ୨୦୧୭ ମସିହାରେ ମୋ ସରକାର ଓଡ଼ିଶା ମିଲେଟ୍ ମିଶନ ଆରମ୍ଭ କରିଛି । ଏହି ମିଶନ ମାଧ୍ୟମରେ ଆମେ ଏହି ସ୍ଥାନୀୟ ଉତ୍କୃଷ୍ଟ ଶସ୍ୟଗୁଡିକୁ ଆଜିର ଖାଦ୍ୟର ଏକ ଅତ୍ୟାବଶ୍ୟକ ଅଂଶ ଭାବରେ ପ୍ରୋତ୍ସାହିତ କରି ବ୍ୟାପକ ଭାବେ ଏକ ବଡ଼ ଆକାରରେ ପୁନଃ ପ୍ରବର୍ତ୍ତନ କରିବାକୁ ଲକ୍ଷ୍ୟ ରଖିଛୁ । ଏହି ଶସ୍ୟ ଆମ ସ୍ୱାସ୍ଥ୍ୟ ପାଇଁ ବେଶ୍ ଉପାଦେୟ । ମିଲେଟ୍ ଫସଲ ବାସ୍ତବରେ ଜଳବାୟୁ ଉପଯୋଗୀ ହୋଇଥିବାରୁ ଏଗୁଡିକ ସବୁ ପ୍ରକାର ଜଳବାୟୁ ଓ ଜମିରେ ଚାଷ କରାଯାଇପାରିବ, ଯାହାକି କ୍ଷୁଦ୍ର ଓ ନାମମାତ୍ର କୃଷକଙ୍କୁ ଯଥେଷ୍ଟ ଆର୍ଥିକ ସହାୟତା ପ୍ରଦାନ କରିବ । ମିଲେଟ୍ ଚାଷ ପାଇଁ ସ୍ୱଳ୍ପ ଜଳ ଏବଂ କାର୍ବନ ପାଦଚିହ୍ନ ଆବଶ୍ୟକ ହେଉଥିବା ହେତୁ ଏହା ପୃଥିବୀ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିଥାଏ ।

୨୦୨୩ ବର୍ଷକୁ ଅନ୍ତର୍ଜାତୀୟ ମିଲେଟ୍ ବର୍ଷ ଭାବେ ଘୋଷଣା କରି ମିଳିତ ଜାତିସଂଘ ଏବଂ ଖାଦ୍ୟ ଓ କୃଷି ସଙ୍ଗଠନ ସଫଳତାର ସହ ଏହି ପୁଷ୍ଟି ଶସ୍ୟଗୁଡ଼ିକୁ ବିଶ୍ୱସ୍ତରରେ ପରିଚିତ କରାଇବା ସହିତ ବିଶ୍ୱକୁ ଏକ ଦୃଢ଼ ବାର୍ତ୍ତା ଦେଇଛନ୍ତି ଯେ ଏହି ପ୍ରାଚୀନ ଶସ୍ୟଗୁଡ଼ିକ ଆଧୁନିକ ସମୟର ଆହ୍ୱାନର ଉତ୍କୃଷ୍ଟ ଉତ୍ତର ହୋଇପାରିବ । ଏଥିପାଇଁ ମୁଁ ସେମାନଙ୍କୁ ହୃଦୟରୁ ଧନ୍ୟବାଦ ଜଣାଉଛି । ପରବର୍ତ୍ତୀ କାର୍ଯ୍ୟକ୍ରମ ଭାବେ ଓଡିଶା ୧୦ ନଭେମ୍ବର ୨୦୨୨କୁ ଏହାର 'ମାଣ୍ଡିଆ ଦିବସ' ପାଳନ କରି ୯ ଏବଂ ୧୦ ନଭେମ୍ବର ୨୦୨୩ରେ ମିଲେଟ ଉପରେ ଅନ୍ତର୍ଜାତୀୟ ସମ୍ମିଳନୀ ଆୟୋଜନ କରୁଛି । ବହୁ କୃଷକ, ମିଲେଟ୍ ମା', ସ୍କୁଲ ପିଲା, ଶିକ୍ଷକ, କ୍ରୀଡ଼ାବିତ୍, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ, କୃଷକ ଉତ୍ପାଦକ ସଂଗଠନ, ଉଦ୍ୟୋଗୀ, ଡାକ୍ତର, ହୋଟେଲ ଏବଂ ସହରାଞ୍ଚଳ ଓ ଗ୍ରାମାଞ୍ଚଳର ଅନେକ ଲୋକଙ୍କ ସକ୍ରିୟ ଯୋଗଦାନରେ ଏହି ସମ୍ମିଳନୀ ଆୟୋଜନ କରାଯାଉଅଛି । ମିଲେଟ୍‌କୁ ପୁନରୁଦ୍ଧାର କରିବା ଏବଂ ମୁଖ୍ୟ ସ୍ରୋତରେ ଆଣିବା ପାଇଁ ଓଡ଼ିଶା ସାମଗ୍ରିକ ଭାବେ ସରକାର ଏବଂ

ସମାଜକୁ ସାମିଲ କରିଛି । ଏ ସମସ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରୟାସ ଦ୍ୱାରା ଆମ ରାଜ୍ୟ ଏହି ଉତ୍କୃଷ୍ଟ ଖାଦ୍ୟକୁ ସାଧାରଣ ଲୋକଙ୍କ ପାଖରେ ପହଞ୍ଚାଇବାକୁ ସୁନିଶ୍ଚିତ କରିଛନ୍ତି ।

ମିଲେଟ୍ ଓ ମିଲେଟ୍‌ଭିତ୍ତିକ ଉଦ୍ୟୋଗକୁ ପ୍ରୋତ୍ସାହନ ଦେଇ ଆଦିବାସୀ ସମ୍ପ୍ରଦାୟଙ୍କୁ ସଶକ୍ତ କରିବା ଆମର ଲକ୍ଷ୍ୟ ।

ଓଡ଼ିଶା ମିଲେଟ୍ ମିଶନ ମାଧ୍ୟମରେ ଆମେ ସଚେତନତା ସୃଷ୍ଟି କରିବା ସହ ନାଗରିକଙ୍କ ମଧ୍ୟରେ ସକାରାତ୍ମକ ଦୃଷ୍ଟିକୋଣ ସୃଷ୍ଟି କରି ରାଜ୍ୟର ସ୍ୱାସ୍ଥ୍ୟ ସୂଚକାଙ୍କ ଉପରେ ସକାରାତ୍ମକ ପ୍ରଭାବ ପକାଇ ନିରବଚ୍ଛିନ୍ନ ଭାବେ କାର୍ଯ୍ୟ କରୁଛୁ ।

ଏହି ଉପାଦେୟ ଶସ୍ୟଗୁଡ଼ିକ ସମ୍ପ୍ରତି ସମାଜରେ ଏହାର ପୂର୍ବ ସ୍ୱୀକୃତି ଲାଭ କରି ଏକ ସୁସ୍ଥ ଜୀବନ ଯାପନ କରିବାରେ ସହାୟକ ହେବ ବୋଲି ମୁଁ ଦୃଢ ଆଶା ପୋଷଣ କରୁଛି ।

**ଜୟ ଜଗନ୍ନାଥ ।**

**ମୁଖ୍ୟମନ୍ତ୍ରୀ, ଓଡ଼ିଶା**

❖ ❖ ❖



ସୁନ୍ଦରଗଡ଼ ଜିଲ୍ଲା ବଡ଼ଗାଁ ବ୍ଲକ୍ ବଡ଼ଗାଁ ଗ୍ରାମର ଅଙ୍ଗନୱାଡ଼ି କେନ୍ଦ୍ରରେ ଶିଶୁମାନେ ମାଣ୍ଡିଆ ଲଡୁର ମଜା ନେଉଛନ୍ତି ।




ବଲାଙ୍ଗିର ଗାନ୍ଧିନଗରରେ ତ୍ରିରଙ୍ଗା ସ୍ୱୟଂ ସହାୟକ ଗୋଷ୍ଠୀର ସଭ୍ୟାମାନଙ୍କ ଦ୍ୱାରା ପରିଚାଳିତ ମିଲେଟ୍ ଶକ୍ତି ଆଉଟ୍‌ଲେଟ୍ ।




ରାୟଗଡ଼ା ଜିଲ୍ଲା କାଶୀପୁରର ମା' ସାତଭଉଣୀ ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ପରିଚାଳିତ ମିଲେଟ୍ ଶକ୍ତି ଟିଫିନ୍ ସେଣ୍ଟର ।




ଭୁବନେଶ୍ୱରଠାରେ ଆୟୋଜିତ ତୋଷାଳି ମେଳାରେ ସୁସ୍ୱାଦୁ ଓ ପୁଷ୍ଟିକର ମିଲେଟ୍‌ଭିତ୍ତିକ ଖାଦ୍ୟର ପ୍ରଦର୍ଶନ ।

# ସମ୍ପାଦକୀୟ



ଓଡିଶା ପାଇଁ ଏହା ଏକ ଗର୍ବ ଏବଂ ଗୌରବର ବିଷୟ ଯେ, ୨୦୨୩ ନଭେମ୍ବର ୯ ଏବଂ ୧୦ ତାରିଖରେ ଭୁବନେଶ୍ୱରରେ ମିଲେଟ୍ସ୍ ସମ୍ବନ୍ଧୀୟ ଦୁଇଦିନିଆ ଅନ୍ତର୍ଜାତୀୟ ସମ୍ମିଳନୀ ଅନୁଷ୍ଠିତ ହେବାକୁ ଯାଉଅଛି । 'ମିଲେଟ୍ସ୍ - ସାଂପ୍ରତିକ ଆହ୍ୱାନ ନିମନ୍ତେ ପ୍ରାଚୀନ ଶସ୍ୟ' ପ୍ରସଙ୍ଗ ସହିତ ଏଭଳି ସମ୍ମିଳନୀ ଆୟୋଜନ କରିବାରେ ଓଡ଼ିଶା ଦେଶର ପ୍ରଥମ ରାଜ୍ୟ । ଏହି ସମ୍ମିଳନୀରେ ମିଲେଟ୍ସ୍ ବା ପୁଷ୍ଟିଶସ୍ୟର ଆଦିବାସୀ ଐତିହ୍ୟ, ମିଲେଟ୍ସ୍ ଉଦ୍ୟୋଗର ସଫଳତାର କାହାଣୀ ଏବଂ ମିଲେଟ୍ସ୍ ଉତ୍ପାଦନ ଓ ବ୍ୟବହାର କ୍ଷେତ୍ରରେ ଅତ୍ୟାଧୁନିକ ଜ୍ଞାନକୌଶଳ ଏବଂ ଉଦ୍ଭାବନ ସମୂହ ପ୍ରଦର୍ଶିତ ହେବ । ଏଥିରେ ଜାତିସଂଘ ଏଜେନ୍ସି, ବିଭିନ୍ନ ଦେଶ, ରାଜ୍ୟ ଏବଂ ମିଲେଟ୍ସ୍ ସମ୍ବନ୍ଧୀୟ କ୍ଷେତ୍ରରୁ ବିଶିଷ୍ଟ ବ୍ୟକ୍ତି ବିଶେଷ ଅଂଶଗ୍ରହଣ କରିବେ ।

ମିଳିତ ଜାତିସଂଘ ଘୋଷଣା ଅନୁଯାୟୀ ୨୦୨୩ ବର୍ଷକୁ ଅନ୍ତର୍ଜାତୀୟ ମିଲେଟ୍ସ୍ ବର୍ଷ ଭାବରେ ପାଳନ କରାଯାଉଛି । ମାଣ୍ଡିଆ ସହିତ ଅନ୍ୟାନ୍ୟ ବାଜରା ଜାତୀୟ ଫସଲକୁ ବିଶ୍ୱସ୍ତରରେ ପ୍ରୋତ୍ସାହିତ କରିବା ପାଇଁ ଭାରତର ପ୍ରଥମ ରାଜ୍ୟ ଭାବେ ଓଡିଶା ସରକାର ନଭେମ୍ବର ୧୦ ତାରିଖକୁ ରାଜ୍ୟରେ ମାଣ୍ଡିଆ ଦିବସ ଭାବେ ପାଳନ କରୁଛନ୍ତି । ଓଡିଶା ପ୍ରଥମ ରାଜ୍ୟ ଭାବେ ପୁଷ୍ଟିଶସ୍ୟ ଫସଲର ଗୁରୁତ୍ୱକୁ ଉପଲବ୍ଧି କରି ସାରା ଦେଶରେ ଏହି ଦିବସ ପାଳନ କରୁଅଛି ।

ଓଡିଶାର ଦୂରଦୃଷ୍ଟିସମ୍ପନ୍ନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ମତରେ, 'ପୁଷ୍ଟି ସହ ସମୃଦ୍ଧି ଯୋଡି ହୋଇ ରହିଛି । ମାଣ୍ଡିଆ ହେଉଛି ପୁଷ୍ଟିର ଭଣ୍ଡାର । ଛୋଟ ପିଲାଙ୍କଠାରୁ ଆରମ୍ଭ କରି ବୟସ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଏହା ପୁଷ୍ଟି ଯୋଗାଉଛି । ମିଲେଟ୍ସ୍ ଚାଷ କରୁଥିବା ଛୋଟ ଚାଷୀ ତଥା ଗରିବ ଆଦିବାସୀ ଚାଷୀଙ୍କ ଅବସ୍ଥାରେ ଉନ୍ନତି ଆଣିବା ସହ ଜନସାଧାରଣଙ୍କୁ ପୁଷ୍ଟି ଯୋଗାଣ ପରି ଦୁଇଟି ଗୁରୁତ୍ୱପୂର୍ଣ୍ଣ ବିଷୟ ପ୍ରତି ଧ୍ୟାନ ଦେଇ ରାଜ୍ୟରେ ୨୦୧୭ ମସିହାରେ ଓଡିଶା ମିଲେଟ ମିଶନ ଆରମ୍ଭ ହୋଇଛି ।'

ଆଜି ମିଲେଟ୍ସ୍ ମିଶନ ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରିବାରେ ସଫଳ ହୋଇଛି । 'ଓଡିଶା ମିଲେଟ ମିଶନ' ଜାତୀୟ ଏବଂ ଅନ୍ତର୍ଜାତୀୟ ସ୍ତରରେ ପ୍ରଶଂସିତ ଏବଂ ପୁରସ୍କୃତ ହୋଇପାରିଛି । ଆଫ୍ରିକା ଓ ଅନ୍ୟାନ୍ୟ ଦେଶରେ ଏହି ମଡେଲର ଅଧ୍ୟୟନ ଓ ଅନୁସରଣ ପାଇଁ ଓଡିଶା ମିଲେଟ ମିଶନ ସହ ମିଳିତ ଜାତିସଂଘ ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ ବୁଝାମଣାପତ୍ର ସ୍ୱାକ୍ଷର କରିଛି । ନିତି ଆୟୋଗ ଏବଂ ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ ମଧ୍ୟ ଏହାର ଉଚ୍ଚ ପ୍ରଶଂସା କରିଛି । କେନ୍ଦ୍ର କୃଷି ମନ୍ତ୍ରାଳୟ ଦ୍ୱାରା ପୋଷକ ଅନାଜ ଆୱାର୍ଡ ରେ ଓଡିଶା ସମ୍ମାନିତ ହେବାର ସୌଭାଗ୍ୟ ଲାଭ କରିଛି । ମିଲେଟ୍ସ୍ ଉତ୍ପାଦନ ଓ ପ୍ରୋତ୍ସାହନରେ ଓଡିଶା ଦେଶର ଶ୍ରେଷ୍ଠ ରାଜ୍ୟ ବୋଲି ପରିଗଣିତ ହୋଇଛି । ଏପରି ପ୍ରୟାସ ପାଇଁ ଆଇ.ସି.ଏ.ଆର୍-ଆଇ.ଆଇ.ଏମ୍.ଆର୍ ଏବଂ ଏଫ୍.ଏ.ଓ. ଦ୍ୱାରା ଓଡ଼ିଶାକୁ କ୍ରମାଗତ ଦୁଇ ବର୍ଷ ଧରି 'ଶ୍ରେଷ୍ଠ ମିଲେଟ୍ସ୍ ପ୍ରୋତ୍ସାହନକାରୀ

ରାଜ୍ୟ'ର ମାନ୍ୟତା ମିଳିଛି । ମାଣ୍ଡିଆକୁ ଦୈନନ୍ଦିନ ଖାଦ୍ୟ ତାଲିକାରେ ସାମିଲ କରିବା ପାଇଁ କାର୍ଯ୍ୟ କରୁଛି 'ଓଡିଶା ମିଲେଟ ମିଶନ' । ଚାଷୀ ଓ ମିଶନ ଶକ୍ତିର ମା' ମାନେ ଏହି କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରୁଛନ୍ତି ।

ମିଲେଟ୍ସ୍ - ୨୦୨୩ ସମ୍ବନ୍ଧୀୟ ଅନ୍ତର୍ଜାତୀୟ ସମ୍ମିଳନୀ ଅବସରରେ, ଉତ୍କଳ ପ୍ରସଙ୍ଗ ଏବଂ ଓଡିଶା ରିଭ୍ୟୁର ନଭେମ୍ବର ସଂଖ୍ୟା ମିଲେଟ୍ସ୍ ଉପରେ ପର୍ଯ୍ୟବସିତ । କୃଷି ଓ କୃଷକ ସଶକ୍ତିକରଣ ବିଭାଗ ଏପରି ଏକ କାର୍ଯ୍ୟକ୍ରମର ଅଂଶ ହେବାକୁ ଆମକୁ ସୁଯୋଗ ଦେଇଛନ୍ତି ।

ବହୁତ ସ୍ୱଳ୍ପ ସମୟ ମଧ୍ୟରେ ଲେଖକମାନେ ମିଲେଟ୍ସ୍ ସମ୍ବନ୍ଧୀୟ ସେମାନଙ୍କର ଉପାଦେୟ ଆଲେଖ୍ୟ ଏବଂ ଗବେଷଣାତ୍ମକ ପ୍ରବନ୍ଧଗୁଡିକୁ ଜଣେ ସାଧାରଣ ତଥା ବୈଷୟିକ ଦୃଷ୍ଟିକୋଣରୁ ଆଗ୍ରହୀ ପାଠକଙ୍କ ପାଇଁ ପରିବେଷଣ କରିଥିବାରୁ ଲେଖକଙ୍କ ଏପରି ମହତ୍ତର ପ୍ରୟାସ ପ୍ରତି ବ୍ୟକ୍ତିଗତ ଭାବରେ ଏବଂ ସୂଚନା ଏବଂ ଲୋକସମ୍ପର୍କ ବିଭାଗ ତରଫରୁ ସାମଗ୍ରିକ ଭାବେ ଧନ୍ୟବାଦ ଦେବା ସହିତ ପ୍ରଶଂସା କରୁଛି । ପ୍ରକାଶନକୁ ଉନ୍ନତମାନର ତଥା ତଥ୍ୟଭିତ୍ତିକ କରିବାରେ ରାଜ୍ୟ ସରକାରଙ୍କର କୃଷି ଓ କୃଷକ ସଶକ୍ତିକରଣ ବିଭାଗର ପ୍ରମୁଖ ଶାସନ ସଚିବଙ୍କ ସକ୍ରିୟ ସହଯୋଗ, ମାର୍ଗଦର୍ଶନ ଓ ପରାମର୍ଶ ପାଇଁ ଆମେ କୃତଜ୍ଞ ।

ଏହି ଗୁରୁଦାୟିତ୍ୱ ସମ୍ପାଦନ କରିବାରେ ସୂଚନା ଏବଂ ଲୋକ ସମ୍ପର୍କ ବିଭାଗର ସମସ୍ତ ପଦାଧିକାରୀ, ବିଶେଷ ଭାବରେ, ବିଭାଗୀୟ ନିର୍ଦ୍ଦେଶକଙ୍କ ସଂପୂର୍ଣ୍ଣ ସହଯୋଗ ନିମନ୍ତେ ଧନ୍ୟବାଦ ଜଣାଉଛି । ସର୍ବୋପରି କୃଷି ଓ କୃଷକ ସଶକ୍ତିକରଣ ବିଭାଗର ଅଧିକାରୀମାନଙ୍କର ସକ୍ରିୟ ସାହାଯ୍ୟ ଏବଂ ସହଯୋଗ ପାଇଁ ମୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ମୋର ସହକର୍ମୀମାନଙ୍କର ଅକ୍ଳାନ୍ତ ପରିଶ୍ରମ ଏବଂ ସକ୍ରିୟ ସହଯୋଗ ନିମନ୍ତେ ସେମାନଙ୍କୁ ଅଶେଷ ଧନ୍ୟବାଦ ଜଣାଉଛି । ସେମାନଙ୍କର ସଂପୃକ୍ତି ବିନା ପତ୍ରିକା ପ୍ରକାଶନ ସମ୍ପୂର୍ଣ୍ଣ କରିବା ଏକ ଅସମ୍ଭବ ବ୍ୟାପାର ହୋଇଥାନ୍ତା । ଓଡିଶା ସରକାରୀ ମୁଦ୍ରଣାଳୟ, କଟକର ଅଧିକାରୀ ଏବଂ କର୍ମଚାରୀମାନଙ୍କ ଅକୁଣ୍ଠ ସହଯୋଗ ପାଇଁ ମଧ ଧନ୍ୟବାଦ ଜଣାଉଛି ।

ଆମେ ଏହି ଅବସରରେ, ସର୍ବସାଧାରଣଙ୍କ ସମକ୍ଷରେ ଉତ୍କଳ ପ୍ରସଙ୍ଗ ଏବଂ ଓଡିଶା ରିଭ୍ୟୁର ଗୁରୁତ୍ୱପୂର୍ଣ୍ଣ ଭୂମିକା ତଥା ବିଶେଷତ୍ୱ ଉପସ୍ଥାପନ କରିବାର ଅପୂର୍ବ ସୁଯୋଗ ପାଇଥିବାରୁ ସରକାରଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରୁଛୁ । ମୋର ଦୃଢ ବିଶ୍ୱାସ, ଏହି ପ୍ରକାଶନ ସାଧାରଣ ତଥା ଆଗ୍ରହୀ ପାଠକମାନଙ୍କ ଦ୍ୱାରା ଆଦୃତ ହେବ ଏବଂ ଜ୍ଞାନ ବୃଦ୍ଧି ସହ ବ୍ୟାବହାରିକ ପରିବର୍ତ୍ତନରେ ସାହାଯ୍ୟ କରିବ ।

ଏହି ଅବସରରେ ଆସନ୍ତୁ, ଆମେ ସମସ୍ତେ ଏହି ପୁଷ୍ଟିଶସ୍ୟଗୁଡିକ ବିଷୟରେ ଜାଣିବା, ଜଣେଇବା ଆଉ ଜିଣିବା । ଏହି ଗୁଣକାରୀ ଉପାଦେୟ ପୁଷ୍ଟିଶସ୍ୟକୁ ଆମ ଦୈନନ୍ଦିନ ଖାଦ୍ୟରେ ସାମିଲ କରି ନିଜକୁ ସୁସ୍ଥ ରଖିବା ଏବଂ ଏକ ସୁସ୍ଥ ଓ ସମୃଦ୍ଧ ସମାଜ ଗଠନ ଦିଗରେ ବ୍ରତୀ ହେବା ।

'ଓଡିଶା ମିଲେଟ୍ ମିଶନ ଚାଷ-ଚାଷୀ ଭରଷା

ପରିବେଶ, ସ୍ୱାସ୍ଥ୍ୟ ଆଉ ରୋଜଗାର ଦିଶା ।।'

କସ୍ତୁରୀ ମହାପାତ୍ର

**ସମ୍ପାଦିକା**

(କସ୍ତୁରୀ ମହାପାତ୍ର)

❖ ❖ ❖

# ଘରେ ଘରେ ମାଣ୍ଡିଆ : ଘରେ ଘରେ ପୁଷ୍ଟି

**ରଣେନ୍ଦ୍ର ପ୍ରତାପ ସ୍ୱାଇଁ**

ଆଜିକାଲି ଚାରିଆଡ଼େ ମାଣ୍ଡିଆକୁ ନେଇ ଚର୍ଚ୍ଚା । ମାଣ୍ଡିଆକୁ ଶ୍ରୀଅନ୍ନ ଏବଂ ଆଦିଅନ୍ନ କୁହାଯାଇଥାଏ । ବହୁ ପ୍ରାଚୀନ କାଳରୁ ମିଲେଟ୍ସ ଜାତୀୟ ଖାଦ୍ୟ ଲୋକମାନଙ୍କର ମୁଖ୍ୟ ଖାଦ୍ୟ ତାଲିକାରେ ସ୍ଥାନ ପାଇ ଆସୁଥିଲା । କାଳକ୍ରମେ ଏହାର ପ୍ରଚଳନ କମି କମି ଆସୁଥିବାବେଳେ ରାଜ୍ୟ ସରକାରଙ୍କ ଦୂରଦୃଷ୍ଟିସମ୍ପନ୍ନ ପଦକ୍ଷେପ ଯୋଗୁଁ ଶ୍ରୀଅନ୍ନ ତା'ର ପୂର୍ବଶିରୀ ଫେରିପାଉଛି । ଅନେକ ପୋଷକତତ୍ତ୍ୱରେ



ଭରପୂର ମାଣ୍ଡିଆ ଖାଇବାର ଉପକାରିତା ବିଷୟରେ ଲୋକମାନେ ସଚେତନ ହେବାପରେ ପୁଣିଥରେ ମାଣ୍ଡିଆ ଖାଦ୍ୟ ପ୍ରତି ସେମାନେ ଆଗ୍ରହ ଦେଖାଇଲେଣି । ଏହି ସମୟରେ ରାଜ୍ୟ ସରକାର ସମୁଚିତ ପଦକ୍ଷେପ ସ୍ୱରୂପ ଓଡ଼ିଶା ମିଲେଟ୍ ମିଶନ ଗଠନ ମାଧ୍ୟମରେ ମାଣ୍ଡିଆ ଚାଷର ପୁନରୁଦ୍ଧାର ସହିତ ମାଣ୍ଡିଆକୁ ଲୋକମାନଙ୍କ ଖାଦ୍ୟ ଥାଳିରେ ପହଞ୍ଚାଇବା ପାଇଁ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ।

ପୁଷ୍ଟିଶସ୍ୟ ମାଣ୍ଡିଆ ରାଜ୍ୟ କୃଷିର ଏକ ଅଭିନ୍ନ ଏବଂ ଗୁରୁତ୍ୱପୂର୍ଣ୍ଣ ଅଂଶବିଶେଷ । ରାଜ୍ୟର ଜଳବାୟୁ ଓ ମୃତ୍ତିକା ଆଧାରରେ ଓଡ଼ିଶାରେ ଦଶଗୋଟି କୃଷି ଜଳବାୟୁ ଅଞ୍ଚଳ ରହିଛି । ବିବିଧତାପୂର୍ଣ୍ଣ ଓଡ଼ିଶାର ମୃତ୍ତିକା ଓ ଜଳବାୟୁ ନାନା ରକମର ଫସଲ ଚାଷ ପାଇଁ ଉପଯୁକ୍ତ ଅଟେ । ବିଶ୍ୱତାପନ ଏବଂ ଜଳବାୟୁ ପରିବର୍ତ୍ତନ ଯୋଗୁଁ କେବଳ ଓଡ଼ିଶା ନୁହେଁ ସମଗ୍ର ବିଶ୍ୱ ଘନ ଘନ ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହେଉଛି । ପ୍ରାକୃତିକ ବିପର୍ଯ୍ୟୟରେ ସାଧାରଣ ଜନଜୀବନ ପ୍ରଭାବିତ ହେଉଥିବାବେଳେ କୃଷି ଓ କୃଷକ ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଥାଏ । ଜଳବାୟୁ ପରିବର୍ତ୍ତନ ଓ ଅନିୟମିତ ବୃଷ୍ଟିପାତ ମାନବ ସମାଜ ପାଇଁ ଆଜି ଏକ ମୁଖ୍ୟ ଆହ୍ୱାନ ହୋଇଥିବାବେଳେ ଏହାର ମୁକାବିଲା କରିବା ଦିଗରେ ଜଳବାୟୁ ସହନଶୀଳ ମିଲେଟ୍ସ ଆମ ପାଇଁ ବରଦାନ ସଦୃଶ ହୋଇଛି ।

ଆବହମାନ କାଳରୁ ଓଡ଼ିଶାର ଜନଜାତି ଅଧ୍ୟୁଷିତ ଅଞ୍ଚଳରେ ମାଣ୍ଡିଆ ଏକ ପ୍ରମୁଖ ଖାଦ୍ୟଭାବରେ ବିବେଚିତ ହୋଇଆସିଛି । ଜନଜାତିଙ୍କ ଏହି ପାରମ୍ପରିକ ଖାଦ୍ୟ ପୁଷ୍ଟିକର ହୋଇଥିବାବେଳେ ଏହା ଲଘୁ ଶସ୍ୟ ଭାବରେ ଅଭିହିତ କରାଯାଇଥାଏ । ମାଣ୍ଡିଆ ଏକ ଅତ୍ୟନ୍ତ

ଉପକାରୀ ଖାଦ୍ୟ ସହ ଏହା ଜଳବାୟୁ ସହନଶୀଳ ଫସଲ ଭାବରେ ସଦା ସ୍ୱୀକୃତ । ବର୍ତ୍ତମାନର ପରିସ୍ଥିତିରେ ଲଘୁଶସ୍ୟ ମାଣ୍ଡିଆ ଚାଷ ଶୁଷ୍କ ଓ ବର୍ଷାପୁଷ୍ଟ ଅଞ୍ଚଳର ଚାଷୀମାନଙ୍କ ପାଇଁ ଉପଯୁକ୍ତ ଓ ଅଧିକ ଲାଭଜନକ କୃଷିକାର୍ଯ୍ୟ ଭାବରେ ସାବ୍ୟସ୍ତ ହୋଇପାରିଛି । ଧାନ, ଗହମ, ମକା ଆଦି ତୁଳନାରେ ମାଣ୍ଡିଆ ଚାଷ ଜଳବାୟୁ ସହନଶୀଳ । ସମସ୍ତ ପ୍ରକାର ପ୍ରତିକୂଳ ପରିସ୍ଥିତିକୁ ମୁକାବିଲା କରିବାର କ୍ଷମତା ଏହାର ରହିଛି । ଅଧିକ ଜଳର ଆବଶ୍ୟକତା ନଥିବାବେଳେ ଅପେକ୍ଷାକୃତ କମ୍ ଉର୍ବର ଜମିରେ ମାଣ୍ଡିଆ ଚାଷ କରାଯାଇପାରୁଛି । ଏଥିରେ ସାର, କୀଟନାଶକ ବ୍ୟବହାରର ଆବଶ୍ୟକତା ପଡ଼ିନଥାଏ । ଏହି ପରିପ୍ରେକ୍ଷୀରେ ପୁଷ୍ଟିଶସ୍ୟ ମାଣ୍ଡିଆ ଚାଷ ଖାଦ୍ୟ ସୁରକ୍ଷା ଦିଗରେ ଏକ ଉପଯୁକ୍ତ ବିକଳ୍ପ ଭାବରେ ଉଭାହୋଇଛି । ଏକଦା ଲଘୁଶସ୍ୟ ଭାବରେ ପରିଗଣିତ ହେଉଥିବା ମିଲେଟ୍ସକୁ ଆଜି ମୁଖ୍ୟଶସ୍ୟ ଭାବରେ ବିବେଚନା କରିବାର ସମୟ ଉପନୀତ ହୋଇଛି ।

ମିଲେଟ୍ସ କେବଳ ଲୋକମାନଙ୍କର ଖାଦ୍ୟ ନିରାପତ୍ତାକୁ ସୁନିଶ୍ଚିତ କରେ ନାହିଁ, ଏହାଦ୍ୱାରା ପୁଷ୍ଟି ନିରାପତ୍ତା ମଧ୍ୟ ହୋଇଥାଏ । ଆମ ରାଜ୍ୟ ଓଡିଶା ପରିପ୍ରେକ୍ଷୀରେ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ରାଜ୍ୟରେ ମହିଳା ଓ ଶିଶୁଙ୍କ ମଧ୍ୟରେ ଅପପୁଷ୍ଟିକୁ କମ୍ କରିବା ପାଇଁ କୃଷି ବିଭାଗ ତରଫରୁ 'ଘର ଦୁଆରେ ପୁଷ୍ଟି' କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି, ଯାହା ଅନ୍ତର୍ଗତ ରାଜ୍ୟରେ ଅପପୁଷ୍ଟିର ଶିକାର ହୋଇଥିବା ପରିବାରଙ୍କୁ ଚିହ୍ନଟ କରି ପୁଷ୍ଟିକର ପନିପରିବା ଓ ଫଳ ଚାରା ସହିତ ଅଣ୍ଡା ପାଇଁ ବାରି ଅଗଣାରେ ବଢିପାରୁଥିବା କୁକୁଡା ମଧ୍ୟ ଦିଆଯାଉଛି । ଏହି ଦିଗରେ, ମାଣ୍ଡିଆର ପ୍ରଚଳନ ଅପପୁଷ୍ଟି ପରି ସମସ୍ୟାକୁ ସମାଧାନ କରିବାରେ ଯଥେଷ୍ଟ ସାହାଯ୍ୟ କରିବ । ମାଣ୍ଡିଆ ଅତ୍ୟନ୍ତ ସ୍ୱାସ୍ଥ୍ୟପ୍ରଦ ଓ ପରିବେଶ ଉପରେ ଏହାର ଅନୁକୂଳ ପ୍ରଭାବ ଯୋଗୁଁ ମାଣ୍ଡିଆ ଚାଷର ପ୍ରସାର ଘଟାଇବାର ଆବଶ୍ୟକତା ଲପଲବ୍ଧି କରି ରାଜ୍ୟ ସରକାର ଓଡ଼ିଶା ମିଲେଟ୍ସ ମିଶନ ଗଠନ କରିଆରେ ମିଲେଟ୍ସ ଚାଷକୁ ଯଥୋଚିତ ଗୁରୁତ୍ୱ ପ୍ରଦାନ କରିଛନ୍ତି । ରାଜ୍ୟର ଚାଷ ଜମିରେ ଏବଂ ଲୋକଙ୍କ ଖାଦ୍ୟଥାଳିରେ ପୁଷ୍ଟିଶସ୍ୟ ମାଣ୍ଡିଆର ପୁନଃ ପ୍ରଚଳନ କରିବା ଏହି ମିଶନର ମୁଖ୍ୟ ଲକ୍ଷ୍ୟ । ୨୦୧୭ ମସିହାରେ ରାଜ୍ୟର ୩୩୩୩ ହେକ୍ଟର ଚାଷଜମିରେ ୮୦୩୦ ଜଣ କୃଷକଙ୍କ ଦ୍ୱାରା ମିଲେଟ୍ସ ଚାଷ କରାଯାଇଥିବା ବେଳେ ଓଡ଼ିଶା ମିଲେଟ୍ସ ମିଶନର ବିଭିନ୍ନ କାର୍ଯ୍ୟକ୍ରମ ଓ ପ୍ରୋତ୍ସାହନ ଯୋଗୁଁ ୨୦୨୩ ବର୍ଷରେ ମାଣ୍ଡିଆ ଚାଷ ୧ ଲକ୍ଷ ୩୫ ହଜାର ହେକ୍ଟର ଜମିକୁ ସଂପ୍ରସାରିତ ହୋଇଛି ଏବଂ ୨ ଲକ୍ଷ ୨୮ ହଜାର ୮୦୮ ଜଣ ଚାଷୀ ମାଣ୍ଡିଆ ଚାଷ କରୁଛନ୍ତି । କେବଳ ମାଣ୍ଡିଆ ଚାଷ ନୁହେଁ, ଉତ୍ପାଦିତ ମାଣ୍ଡିଆକୁ ଚାଷୀମାନଙ୍କଠାରୁ ଉଚିତ ମୂଲ୍ୟରେ କ୍ରୟ କରିବା ଦିଗରେ ରାଜ୍ୟ ସରକାର ପ୍ରାଥମିକତା ପ୍ରଦାନ କରୁଛନ୍ତି । ୨୦୧୮-୧୯ ବର୍ଷରେ ରାଜ୍ୟ ସରକାର ୧୭ ହଜାର କ୍ୱିଣ୍ଟାଲ ମିଲେଟ୍ସ ସଂଗ୍ରହ କରିଥିବାବେଳେ ୨୦୨୨-୨୩ ବର୍ଷରେ ଏହା ୬ ଲକ୍ଷ ୪ ହଜାର କ୍ୱିଣ୍ଟାଲକୁ ବୃଦ୍ଧି ପାଇଛି । ସେହିପରି ୨୦୨୩-୨୪ ଆର୍ଥିକ ବର୍ଷରେ ଚାଷୀମାନଙ୍କୁ ସର୍ବନିମ୍ନ ସହାୟକ ମୂଲ୍ୟ ପ୍ରଦାନ କରି ୮ ଲକ୍ଷ କ୍ୱିଣ୍ଟାଲ ମାଣ୍ଡିଆ ସଂଗ୍ରହର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ମାଣ୍ଡିଆର ଲୋକପ୍ରିୟତା ଓ କ୍ରମବର୍ଦ୍ଧିଷ୍ଣୁ ଚାହିଦାକୁ ଦୃଷ୍ଟିରେ ରଖି ଏହି ପୁଷ୍ଟିଶସ୍ୟକୁ ଘରେ ଘରେ ପହଞ୍ଚାଇବା ଉଦ୍ଦେଶ୍ୟରେ ଓଡ଼ିଶା ମିଲେଟ୍ସ ମିଶନର କାର୍ଯ୍ୟକ୍ରମ ଓଡ଼ିଶାର ସମସ୍ତ ୩୦ଟି ଜିଲ୍ଲାର ୧୭୭ଟି ବ୍ଲକ୍‌ରେ କାର୍ଯ୍ୟକାରୀ କରାଯାଉଛି । ଏହି ଯୋଜନାରେ ଚାଷୀମାନେ ଉନ୍ନତ ଚାଷ ପଦ୍ଧତି ଅବଲମ୍ବନ କରି ମାଣ୍ଡିଆ ଚାଷ କରିବା ଉଦ୍ଦେଶ୍ୟରେ ଚାଷୀମାନଙ୍କ ପାଇଁ ୨୦୨୩-୨୪ରୁ ୨୦୨୬-୨୭ ବର୍ଷ ପର୍ଯ୍ୟନ୍ତ ୪ ବର୍ଷ ପାଇଁ ୨୬୮୭ କୋଟି ୪୫ ଲକ୍ଷ ଟଙ୍କା ବ୍ୟୟ ଅଟକଳ କରାଯାଇଛି । ଚାଷୀମାନଙ୍କୁ ଡିବିଟି ମାଧ୍ୟମରେ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି । ଆଗାମୀ ଦିନରେ ପ୍ରତ୍ୟେକ ଜିଲ୍ଲାର ଅଣ-ଜଳସେଚିତ ଏବଂ ସ୍ୱଳ୍ପ

ଜଳସେଚିତ ଜମିରେ ମିଲେଟ୍ସ ଚାଷ କରାଯିବା ପାଇଁ ଚାଷୀମାନଙ୍କୁ ପ୍ରୋତ୍ସାହିତ କରାଯିବାର କାର୍ଯ୍ୟକ୍ରମ ରହିଛି । ଏହି ଯୋଜନା ଗ୍ରାମୀଣ ବର୍ଷାପୁଷ୍ଟ ଅଞ୍ଚଳରେ ପୁଷ୍ଟିଶସ୍ୟ ଫସଲ ମାଧ୍ୟମରେ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କର ଜୀବନ ଜୀବିକାର ଉନ୍ନତି ସହ ସାଧାରଣ ଜନତାଙ୍କ ପୁଷ୍ଟି ସୁରକ୍ଷା ଦିଗରେ ଅଭୂତପୂର୍ବ ସଫଳତା ଲାଭ କରିଛି ।

ଆଦିବାସୀ ଉନ୍ନୟନ ସମବାୟ ନିଗମ ଲିଃ ଦ୍ୱାରା ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ଚାଷୀମାନଙ୍କଠାରୁ ସଂପୂର୍ଣ୍ଣ ସ୍ୱଚ୍ଛତା ଅବଲମ୍ବନ କରି ଏମ୍-ପାସ ଜରିଆରେ ମାଣ୍ଡିଆ ସଂଗ୍ରହ କରାଯାଇ ୭୨ ଘଣ୍ଟା ମଧ୍ୟରେ ଚାଷୀମାନଙ୍କୁ ସେମାନଙ୍କର ପ୍ରାପ୍ୟ ପ୍ରଦାନ କରାଯାଉଛି । ଏଥିସହିତ ୨୦୨୨-୨୩ ବର୍ଷରେ ସାଧାରଣ ବଣ୍ଟନ ବ୍ୟବସ୍ଥାରେ ୧୪ଟି ଜିଲ୍ଲାର ୧୧୩.୭୬ ଲକ୍ଷ ରାସନ କାର୍ଡଧାରୀଙ୍କୁ ୪ ଲକ୍ଷ ୨୫୦୦ କ୍ୱିଣ୍ଟାଲ ରାଗି ଯୋଗାଇ ଦିଆଯାଇଛି । ଏନ୍‌ସିଡିଏସ୍‌ର ରିପୋର୍ଟ ଅନୁଯାୟୀ ୨୦୧୬-୧୭ ବର୍ଷ ମାଣ୍ଡିଆ ଉତ୍ପାଦନ ହେକ୍ଟର ପିଛା ୬.୪ କ୍ୱିଣ୍ଟାଲରୁ ୨୦୧୯-୨୦ରେ ୧୪.୯ କ୍ୱିଣ୍ଟାଲକୁ ବୃଦ୍ଧି ପାଇଛି । ସେହିପରି ଋତୁ ବିଶେଷରେ ଲୋକମାନଙ୍କ ମଧ୍ୟରେ ମାଣ୍ଡିଆର ବ୍ୟବହାର ମଧ୍ୟ ବୃଦ୍ଧି ପାଇଛି ।

ଓଡ଼ିଶା ମିଲେଟ୍ସ ମିଶନର ମୁଖ୍ୟ ଆଭିମୁଖ୍ୟଗୁଡ଼ିକ ହେଲା ଜନସାଧାରଣଙ୍କ ଖାଦ୍ୟ ତାଲିକାରେ ମାଣ୍ଡିଆର ଚାହିଦାକୁ ବୃଦ୍ଧି କରିବା, ଉଭୟ ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ମିଲେଟ୍ସ ଖାଦ୍ୟର ପ୍ରଚାର ଓ ପ୍ରସାର, ପାରମ୍ପରିକ ମାଣ୍ଡିଆ ଭୂ-ପ୍ରଜାତି ବିହନର ସଂରକ୍ଷଣ ଓ ବିହନ ପ୍ରଣାଳୀରେ ସାମିଲ କରିବା, ଅମଳ ପରବର୍ତ୍ତୀ ପର୍ଯ୍ୟାୟରେ ମାଣ୍ଡିଆର ପ୍ରକ୍ରିୟାକରଣ ଓ ମୂଲ୍ୟଯୁକ୍ତ କରିବା, ମାଣ୍ଡିଆ ଚାଷର ଉତ୍ପାଦିକତା ବୃଦ୍ଧି କରିବା, ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ମାଣ୍ଡିଆକୁ ମୂଲ୍ୟଯୁକ୍ତ ଓ ପ୍ରକ୍ରିୟାକରଣ ଉଦ୍ଦେଶ୍ୟରେ ଉଦ୍ୟୋଗ ସ୍ଥାପନ ନିମନ୍ତେ ପ୍ରୋତ୍ସାହନ ଯୋଗାଇ ଦେବା, ସାଧାରଣ ବଣ୍ଟନ ବ୍ୟବସ୍ଥା, ଆଇସିଡିଏସ୍, ମଧ୍ୟାହ୍ନ ଭୋଜନ, ଜନଜାତି ମଙ୍ଗଳ ଛାତ୍ରାବାସ ଆଦିରେ ମିଲେଟ୍ସରୁ ପ୍ରସ୍ତୁତ ଖାଦ୍ୟକୁ ସାମିଲ କରିବା ଏବଂ ମିଲେଟ୍ସର ବିକ୍ରିବଟାର ସୁବିଧା ଓ ମାଣ୍ଡିଆରୁ ପ୍ରସ୍ତୁତ ଖାଦ୍ୟକୁ ବିଦେଶକୁ ରପ୍ତାନିର ସୁବିଧା ସୃଷ୍ଟି କରିବା ।

ଓଡ଼ିଶା ମିଲେଟ୍ସ ମିଶନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ରାଜ୍ୟର ମହିଳାମାନଙ୍କର ସଶକ୍ତିକରଣ । କ୍ଷେତରୁ ଆରମ୍ଭ କରି ଖାଦ୍ୟଥାଳି ପର୍ଯ୍ୟନ୍ତ ମିଲେଟ୍ସର ପ୍ରତ୍ୟେକଟି ସ୍ତରରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ତଥା ମହିଳାମାନଙ୍କୁ ସାମିଲ କରାଯାଉଛି । ମାଣ୍ଡିଆ ଚାଷଠାରୁ ଆରମ୍ଭ କରି ଏହାର ଅମଳ, ପ୍ରକ୍ରିୟାକରଣ, ମୂଲ୍ୟଯୁକ୍ତ କରିବା, ବିକ୍ରିବଟା ଇତ୍ୟାଦି କ୍ଷେତ୍ରରେ ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ମହିଳାମାନଙ୍କର ସହଭାଗିତା ରହିଛି । ଫଳସ୍ୱରୂପ ମାଣ୍ଡିଆ ଚାଷ ଦ୍ୱାରା ଲକ୍ଷ ଲକ୍ଷ ମହିଳା ଚାଷୀଙ୍କ ସମେତ ଏଥିରେ ସଂପୃକ୍ତ ମହିଳାମାନଙ୍କର ଅର୍ଥନୈତିକ ଏବଂ ସାମାଜିକ ସ୍ତରରେ ବିକାଶ ହୋଇପାରିଛି ।

ଓଡ଼ିଶା ମିଲେଟ୍ସ ମିଶନର ଏହି ମାର୍ଗଦର୍ଶୀ କାର୍ଯ୍ୟକ୍ରମ ଭାରତ ସରକାର ଏବଂ ମିଳିତ ଜାତିସଂଘ ଦ୍ୱାରା ଏକ ଆଦର୍ଶ ପଦକ୍ଷେପ ଭାବରେ ପ୍ରଶଂସିତ ହୋଇଛି । ଭାରତ ସରକାରଙ୍କ ନିତି ଆୟୋଗ ଓଡ଼ିଶାର ଏହି ମଡେଲକୁ ଅନ୍ୟ ରାଜ୍ୟରେ କାର୍ଯ୍ୟକାରୀ କରିବାକୁ ପରାମର୍ଶ ଦେଇଛନ୍ତି । ପୂର୍ବରୁ ଜନଜାତି ଓ ସାଧାରଣ ଲୋକଙ୍କ ଖାଦ୍ୟ ଭାବେ ବିବେଚିତ ହେଉଥିବା ମିଲେଟ୍ସ ଆଜି ସହରର ନାମୀଦାମୀ ରେଷ୍ଟୁରାଣ୍ଟ ଏବଂ ହୋଟେଲ ମେନୁରେ ସ୍ଥାନ ପାଇଛି । ପୂର୍ବରୁ ମାଣ୍ଡିଆର ବ୍ୟବହାର ପେଜ ଓ ଜାଉରେ ସୀମିତ ଥିଲା । ଏବେ ମାଣ୍ଡିଆରୁ ବିଭିନ୍ନ ପ୍ରକାର ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ କରାଯାଇପାରୁଛି । ଓଡ଼ିଶା ମିଲେଟ୍ସ ମିଶନର ପଦକ୍ଷେପ ଯୋଗୁଁ ବଡ଼ ବଡ଼ ହୋଟେଲର ସେଫ୍‌ମାନେ ମାଣ୍ଡିଆରୁ ବିଭିନ୍ନ ପ୍ରକାର ଖାଦ୍ୟ ପ୍ରସ୍ତୁତ କରୁଛନ୍ତି ଯାହା ଗ୍ରାହକମାନଙ୍କ ନିକଟରେ ଲୋକପ୍ରିୟ ହୋଇପାରୁଛି । ମାଣ୍ଡିଆରେ ପୌଷ୍ଟିକ ତତ୍ତ୍ୱ ଭରପୂର ଥିବାରୁ ଏହାକୁ ପୌଷ୍ଟିକତାର ପାୱାର ହାଉସ କୁହାଯାଉଛି ଏବଂ ଏହା ଏକ ସୁପରଫୁଡ୍ ଭାବରେ ବିବେଚିତ ହେଉଛି ।

ଏହି ପରିପ୍ରେକ୍ଷୀରେ ରାଜ୍ୟ ସରକାର ମାଣ୍ଡିଆ ଚାଷର ପ୍ରଚାର ଓ ପ୍ରସାରକୁ ସର୍ବାଧିକ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଜନ ସଚେତନତା ବୃଦ୍ଧି ନିମନ୍ତେ ରାଜ୍ୟ ସରକାର ନଭେମ୍ବର ମାସ ୧୦ ତାରିଖକୁ ''ମାଣ୍ଡିଆ ଦିବସ'' ଭାବରେ ପାଳନ କରୁଛନ୍ତି । ସାରା ଦେଶରେ ମାଣ୍ଡିଆ ଦିବସ ପାଳନ କରିବାରେ ଓଡ଼ିଶା ପ୍ରଥମ ରାଜ୍ୟ ।

ମିଳିତ ଜାତିସଂଘ ୨୦୨୩କୁ ''ଆନ୍ତର୍ଜାତିକ ମିଲେଟ୍ସ ବର୍ଷ'' ଭାବରେ ଘୋଷଣା କରିଥିବା ପରିପ୍ରେକ୍ଷୀରେ ରାଜ୍ୟ ସରକାରଙ୍କ ପକ୍ଷରୁ ନଭେମ୍ବର ୯ ଓ ୧୦ ତାରିଖରେ ଭୁବନେଶ୍ୱରଠାରେ ମିଲେଟ୍ସ ସମ୍ବନ୍ଧୀୟ ଅନ୍ତର୍ଜାତୀୟ ସମ୍ମିଳନୀର ଆୟୋଜନ ରାଜ୍ୟ ସରକାରଙ୍କ ମିଲେଟ୍ସ ପ୍ରତି ଥିବା ପ୍ରତିବଦ୍ଧତାକୁ ସୂଚାଇଥାଏ । ଓଡ଼ିଶା ମିଲେଟ୍ସ ମିଶନ ଗଠନ ହେବା ଦିନଠାରୁ ମିଲେଟ୍ସ କ୍ଷେତ୍ରରେ ଓଡ଼ିଶା ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଏକ ଆଗଧାଡ଼ିର ରାଜ୍ୟ ଭାବରେ ପରିଗଣିତ ହୋଇଛି । ଆମ ଚାଷୀ ଭାଇ ଓ ଭଉଣୀମାନଙ୍କ ଅକ୍ଳାନ୍ତ ପରିଶ୍ରମ ଓ ଉଦ୍ୟମ ଯୋଗୁଁ ଓଡ଼ିଶାରେ ପୁଷ୍ଟିଶସ୍ୟର ପୁନରୁଦ୍ଧାର କାର୍ଯ୍ୟକ୍ରମ ଆଜି ରାଜ୍ୟକୁ ବିଶ୍ୱ ଦରବାରରେ ଏକ ସ୍ୱତନ୍ତ୍ର ପରିଚୟ ଆଣିଦେଇଛି ଏଥିରେ ଦ୍ୱିରୁକ୍ତି ନାହିଁ । ଦୀର୍ଘମିଆଦୀ କାର୍ଯ୍ୟକ୍ରମ ପ୍ରସ୍ତୁତ କରି ରାଜ୍ୟରେ ମିଲେଟ୍ସ ଚାଷ ଓ ବ୍ୟବହାରକୁ ବ୍ୟାପକ କରାଯିବା ସହିତ ଘରେ ଘରେ ମିଲେଟ୍ସ ପହଞ୍ଚାଇବା ସହିତ ଘରେ ଘରେ ପୁଷ୍ଟି ପାଇଁ ରାଜ୍ୟ ସରକାର ପଦକ୍ଷେପ ନେଉଛନ୍ତି । ମାଣ୍ଡିଆ ଚାଷରେ ମହିଳାଙ୍କୁ ବହୁଳ ଭାବେ ସାମିଲ କରି ଏହାକୁ ଲୋକପ୍ରିୟ କରାଇବାରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦିଗ୍‌ଦର୍ଶୀ ପଥ ପ୍ରଦର୍ଶନ ସହିତ ଆବଶ୍ୟକ ପୁଞ୍ଜି ପ୍ରାବଧାନ ଯୋଗୁଁ ଓଡିଶାର ମିଲେଟ୍ସ କାର୍ଯ୍ୟକ୍ରମ ଆଜି ସାରା ବିଶ୍ୱରେ ପ୍ରଶଂସିତ ହେବା ସହିତ ଜାତୀୟ ସ୍ତରରେ ଓଡିଶା, ଏ କ୍ଷେତ୍ରରେ ଏକ ଅଗ୍ରଣୀ ରାଜ୍ୟ ଭାବେ ପ୍ରତିଷ୍ଠା ଲାଭ କରିପାରିଛି । ଏହା ଆମ ରାଜ୍ୟ ପାଇଁ ନିଶ୍ଚିତ ଭାବେ ଗର୍ବର ବିଷୟ ।

ମନ୍ତ୍ରୀ, କୃଷି ଓ କୃଷକ ସଶକ୍ତିକରଣ ଏବଂ
ମତ୍ସ୍ୟ ଓ ପ୍ରାଣିସମ୍ପଦ ବିକାଶ, ଓଡିଶା

❖ ❖ ❖

# ଓଡ଼ିଶାର ପରମ୍ପରା ଓ ସଂସ୍କୃତିରେ ମାଣ୍ଡିଆ

ଡ. ଜ୍ୟୋତି ପ୍ରକାଶ ମହାପାତ୍ର

'ମାଟି ମଣିଷର ନୁହେଁ, ମଣିଷ ମାଟିର । ମଣିଷର ମୁଠା ଭିତରେ ଥାଇ ମାଟି ହସୁଥାଏ, ଅପେକ୍ଷା କରିଥାଏ ମଣିଷ କେତେବେଳେ ଝଡ଼ିବ, ମାଟିର ବଳ ବଢ଼ିବ, ଖତ ମଟାଳ, ଦୋରସା । ପୁଣି ସେଥିରେ ଅନର୍ଯାପ ଘାସ ବଢ଼ିବ, ମାଣ୍ଡିଆ ବଢ଼ିବ, ପୁଣି ଝଡ଼ିବ ପଡ଼ିବ, ପଚି ପଚି ମିଶୁଥିବ, ଯୁଗ ଯୁଗ ଯାକେ ।'



('ପରଜା'- ଗୋପୀନାଥ ମହାନ୍ତି)

କୋରାପୁଟର ପରଜା ଜନଜାତିଙ୍କ ଜୀବନ, ସଂଘର୍ଷ, ପରମ୍ପରା, ଜୀବିକାର ଲଢ଼େଇକୁ ନେଇ ଜ୍ଞାନପୀଠ ବିଜେତା ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସର ଏଇ କେଇ ଧାଡ଼ି ଜୀବନର ମହାନ ଆଦର୍ଶକୁ ନିଖୁଣ ଭାବେ ଦର୍ଶାଏ । ସେମିତି ଗୋପୀନାଥ ମହାନ୍ତିଙ୍କ 'ପରଜା' ଉପନ୍ୟାସରେ ମାଣ୍ଡିଆ ଶବ୍ଦର ଉଲ୍ଲେଖ, ଯଥାର୍ଥରେ ସେଠାକାର ପରଜା ସଂସ୍କୃତି ଓ ଜନଜୀବନ ସହିତ ମାଣ୍ଡିଆ ଅଙ୍ଗାଙ୍ଗୀଭାବେ ଜଡ଼ିତ ଥିବା ସ୍ପଷ୍ଟ ଭାବେ ଇଙ୍ଗିତ କରୁଛି ।

ମାଣ୍ଡିଆକୁ ଛାଡ଼ି ଓଡ଼ିଶାର ଜନଜାତି ସଂସ୍କୃତିର କଳନା କରିହେବ ନାହିଁ । ମଣିଷ, ମାଟି ଓ ମାଣ୍ଡିଆ ଏହି ତିନୋଟିର ସମ୍ପର୍କ ବହୁତ ପୁରୁଣା ଓ ଅନ୍ତରଙ୍ଗ । ପ୍ରାଚୀନ ସଂସ୍କୃତ ସାହିତ୍ୟର 'ଅଭିଜ୍ଞାନ ଶାକୁନ୍ତଳମ୍' କାବ୍ୟରୁ ଆରମ୍ଭ କରି ସମକାଳୀନ ଓଡ଼ିଆ ସାହିତ୍ୟର 'ପରଜା' ଉପନ୍ୟାସ ପର୍ଯ୍ୟନ୍ତ, ସବୁଠି ମାଣ୍ଡିଆର ନାମ ଉଲ୍ଲେଖ ଅଛି । ବୈଦିକ ଯୁଗର ଯଜୁର୍ବେଦ ଗ୍ରନ୍ଥରେ ଶ୍ୟାମକ (ବ୍ଲାକ ଫିଙ୍ଗର ମିଲେଟ୍), ପ୍ରୀୟଙ୍ଗବ (ଫକ୍ସଟେଲ ମିଲେଟ୍), ଆନୟ (ବାର୍ଣ୍ଣୟାର୍ଡ ମିଲେଟ) ବିଷୟରେ ବର୍ଣ୍ଣନା କରାଯାଇଛି । ମହାକବି କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳମ୍'ରେ ଋଷି କନ୍ୱ ଶକୁନ୍ତଳାଙ୍କୁ ବିଦାୟ ଦେବା ସମୟରେ ମିଲେଟ ଢାଳିବା କଥା ଉଲ୍ଲେଖ ଅଛି । ତେଣୁ ଭାରତରେ ମାଣ୍ଡିଆ ସହ ମଣିଷର ପରିଚୟ ପାଖାପାଖି ଖ୍ରୀଷ୍ଟପୂର୍ବ ୪୫୦୦ରୁ, ଅର୍ଥାତ୍ ୬୫୦୦ ବର୍ଷର ପୁରୁଣା ସମ୍ପର୍କ ।

ଷାଠିଏ ଦଶକର ଭାରତରେ ସବୁଜ ବିପ୍ଳବ ଆରମ୍ଭ ହେବା ପରେ ଧାନ ଓ ଗହମ ଚାଷର ଗୁରୁତ୍ୱ ବଢ଼ିଯାଇଥିଲା । ଯାହା ଫଳରେ ମିଲେଟ ଚାଷର ପରିମାଣ କମିବାରେ ଲାଗିଲା । ସବୁଜ ବିପ୍ଳବ ପୂର୍ବରୁ ଦେଶର ୩୬ ମିଲିୟନ ହେକ୍ଟର ଜମିରେ ମିଲେଟ ଚାଷ କରାଯାଉଥିବା ବେଳେ ୨୦୧୬-୧୭ ମସିହାରେ ଏହାର ପରିମାଣରେ ହ୍ରାସ ଘଟି ମାତ୍ର ୧୪ ମିଲିୟନ ହେକ୍ଟରରେ ପହଁଚିଥିଲା । ମିଲେଟ କେବଳ ଗରିବଙ୍କ ଖାଦ୍ୟ ବୋଲି ସାଧାରଣରେ ଧାରଣା ରହିଥିଲା ଓ ସେ ଧାରଣା ବଢ଼ି ବି ଚାଲିଥିଲା ।

କିନ୍ତୁ ଏବେ ଧାରା ବଦଳିଛି । ପୁଣିଥରେ ମିଲେଟ୍‌କୁ 'ଶ୍ରୀ ଅନ୍ନ'ର ମର୍ଯ୍ୟାଦା ମିଳିବା ପରେ ଏହାର ଚାଷକୁ ସବୁସ୍ତରରେ ପ୍ରୋତ୍ସାହନ ଦିଆଯାଉଛି । ଓଡ଼ିଶାରେ ମିଲେଟ ଉତ୍ପାଦନ ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଛି । ବିଶେଷ ଭାବରେ ଦକ୍ଷିଣ ଓଡ଼ିଶାରେ ହିଁ ଅଧିକ ପରିମାଣରେ ମାଣ୍ଡିଆ ବା ଫିଙ୍ଗର ମିଲେଟ ଚାଷ ହୁଏ । ଦକ୍ଷିଣ ଓଡ଼ିଶାରେ ମୁଖ୍ୟତଃ କନ୍ଧ ସମ୍ପ୍ରଦାୟର ଜନଜାତିମାନେ ମାଣ୍ଡିଆ ଚାଷ କରିଥାନ୍ତି । ମାଣ୍ଡିଆରେ ପ୍ରସ୍ତୁତ 'ଜାଉ' ବା ମାଣ୍ଡିଆ ପେଜ ଆଦିବାସୀଙ୍କ ଏକ ମୁଖ୍ୟ ଖାଦ୍ୟ । ମାଣ୍ଡିଆ କେବଳ ଯେ ଜୀବନଧାରଣ ପାଇଁ ଆବଶ୍ୟକ ଏକ ଖାଦ୍ୟଶସ୍ୟ ତା ନୁହେଁ, ବରଂ ପାହାଡ଼, ପର୍ବତ, ଜଳ, ଜଙ୍ଗଲକୁ 'ଧରଣୀ ପେନୁ' ଭାବେ ପୂଜା କରୁଥିବା ଜନଜାତିଙ୍କ ସାଂସ୍କୃତିକ ବିଭବର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଧରଣୀର ମୁଖ୍ୟ ବରଦାନ ମାଣ୍ଡିଆ, ଯାହା ବର୍ଷକର ଖାଦ୍ୟ ଚାହିଦା ପୂରଣ କରେ ।

କନ୍ଧମାନଙ୍କ ଜୀବନଶୈଳୀକୁ ନିରୀକ୍ଷଣ କଲେ ଏହା ବୁଝିହୁଏ । ଜନଜାତିଙ୍କ ରୋଷେଇ ଘରେ ସ୍ଥାନ ପାଉଥିବା ମାଣ୍ଡିଆ ଖାଦ୍ୟ ଏବେ ସହରର ଆଭିଜାତ୍ୟପୂର୍ଣ୍ଣ କୋଠାଘରେ ପ୍ରବେଶ କରିସାରିଲାଣି । ଗ୍ରାମାଞ୍ଚଳରୁ ସହରମୁହାଁ ମିଲେଟ ଉତ୍ପାଦ । ମିଲେଟ ଚାଷ ସହ ଯୋଡ଼ି ହୋଇଛି ବ୍ୟବସାୟ । ସହରରେ ଡାଇବେଟିସ, ଉଚ୍ଚ କୋଲେଷ୍ଟରଲ, ମେଦ ବହୁଳତା, ହୃଦ୍‌ରୋଗରେ ପୀଡିତ ଲୋକଙ୍କ ପାଇଁ ମିଲେଟ ଶସ୍ୟ ସଂଜୀବନୀ ସାଜିଛି ।

ମାଣ୍ଡିଆ ପ୍ରସ୍ତୁତ ଲଡୁ, ମିକ୍ସଚର, ସ୍ନାକ୍ସ, ପୁରି, ଇଡ଼ଲି, ଦୋଷା ଓ ବିସ୍କୁଟ୍ ଆଦି ଖାଦ୍ୟ ସାମଗ୍ରୀର ଲୋକପ୍ରିୟତା ବଢ଼ିବାରେ ଲାଗିଛି । ମିଲେଟ ମିଶନ ପକ୍ଷରୁ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ମିଲେଟ କାଫେ ପରିଚାଳିତ ହେଉଛି । ହୋଟେଲ, କାଫେ, ରେସ୍ତୋରାଁ ଆଦିରେ ମାଣ୍ଡିଆରୁ ପ୍ରସ୍ତୁତ ସୁସ୍ୱାଦୁ ବ୍ୟଞ୍ଜନ ପରଷା ଯାଉଛି । ତେବେ ଏସବୁ ସମ୍ଭବ ହୋଇପାରିଛି, କେବଳ ଓଡ଼ିଶାର ଆଦିବାସୀମାନେ ବର୍ତ୍ତମାନ ଯାଏଁ ମାଣ୍ଡିଆ ଚାଷକୁ ବଞ୍ଚାଇ ରଖିଥିବା ଯୋଗୁଁ । କାରଣ ଜନଜାତିଙ୍କ ଜୀବନ, ଜୀବିକା ସହ ମାଣ୍ଡିଆ ଆତ୍ମିକ ଭାବେ ଜଡ଼ିତ । ମାଣ୍ଡିଆ ଅମଳ ହେବା ପରେ ଜନଜାତିମାନେ ଆନନ୍ଦ ଉଲ୍ଲାସରେ ଲୋକନୃତ୍ୟ ସହ କୃଷିଭିତ୍ତିକ ପର୍ବ ପାଳନ କରନ୍ତି । ଗୋପୀନାଥ ମହାନ୍ତିଙ୍କ 'ପରଜା', 'ଅମୃତର ସନ୍ତାନ' ଆଦି କାଳଜୟୀ ଲେଖାରେ ତାହା ସ୍ପଷ୍ଟ ।

କୋରାପୁଟର ପରଜାମାନେ ଦିନରେ ସୁଆଁ ଭାତ ଓ କୋଳଥ ଡାଲି ଖାଆନ୍ତି । ସେମାନେ ମୁଖ୍ୟତଃ ମାଣ୍ଡିଆ, ସୁଆଁ, ଛୋଟସୁଆଁ ଓ କାଙ୍ଗୁ ଚାଷ କରନ୍ତି । କମ୍ ସମୟ ଅବଧିରେ ଏବଂ ପ୍ରତିକୂଳ ପରିସ୍ଥିତିରେ ପାର୍ବତ୍ୟ କିମ୍ବା ମାଳ ଅଞ୍ଚଳରେ ମିଲେଟ ଚାଷ କରାଯାଇପାରିବ । ଏଥିପାଇଁ ଅଧିକ ପରିଶ୍ରମ କିମ୍ବା ଅଧିକ ଜଳସେଚନର ଆବଶ୍ୟକତା ନାହିଁ । ଯେହେତୁ ଅନେକ ପ୍ରତିକୂଳ ପରିସ୍ଥିତିରେ ଏହା ବଢେ ଓ ଉତ୍ପାଦନ ଦିଏ, ଠିକ୍ ଯେମିତି ଜନଜାତିଙ୍କ ଜୀବନ ପରି, ଯେଉଁମାନେ ପାହାଡ଼, ଝୋଲା, ଡଙ୍ଗର ଆଦି ପ୍ରତିକୂଳ ପରିସ୍ଥିତିରେ ରହି ସଦାସର୍ବଦା ଜୀବନର ଜୟଗାନ କରି ଆସିଛନ୍ତି ।

କୋରାପୁଟ ଜିଲ୍ଲାରେ ଅମଳ ହେଉଥିବା ମାଣ୍ଡିଆରେ ଅଧିକ ପୋଷକତତ୍ତ୍ୱ ଅଛି ବୋଲି ବିଶେଷଜ୍ଞମାନେ କୁହନ୍ତି ଯାହା ଅନ୍ୟ କେଉଁଠି ମିଳେ ନାହିଁ । କୋରାପୁଟର ଜନଜାତିମାନେ ଚାଷ କରୁଥିବା ପାରମ୍ପରିକ ମାଣ୍ଡିଆ ମରୁଡ଼ି ପରିବେଶକୁ ସହ୍ୟ କରିବାର କ୍ଷମତା ଅଛି ବୋଲି ଓଡ଼ିଶା କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର ସହାୟକ ପ୍ରଫେସର ଡଃ ଦେବବ୍ରତ ପଣ୍ଡା ଦର୍ଶାଇଛନ୍ତି । ସେ ଦୀର୍ଘ ୧୦ ବର୍ଷ ହେବ କୋରାପୁଟର ବିଭିନ୍ନ ଦେଶୀ ମାଣ୍ଡିଆର ଜଳବାୟୁ ବିପର୍ଯ୍ୟୟ ସହନଶୀଳତା ଉପରେ ଗବେଷଣା କରି ଏହି ତଥ୍ୟ ଦର୍ଶାଇଛନ୍ତି । ସେହି ଗବେଷଣାରୁ ଜଣାପଡିଛି ଯେ ଛଅ ପ୍ରକାରର ପାରମ୍ପରିକ ମାଣ୍ଡିଆ ଯଥା: ଲଡୁ, ଲାଲା, ବାଟି, ବିରି, ଚୁମୁକା ଓ ଭାଲୁ ଆଦି କିସମର ମରୁଡ଼ି ପରିବେଶକୁ ସହ୍ୟ କରିବାର କ୍ଷମତା ରହିଛି ଏବଂ ଏହି ମାଣ୍ଡିଆ ଚାଷ କମ୍ ପାଣିରେ ମଧ କରାଯାଇପାରିବ । ଏଥିରେ ରୋଗ ପ୍ରତିରୋଧକ ଶକ୍ତି ଭରପୂର ହୋଇରହିଛି । ତେଣୁ ଏହାର ଉତ୍ପାଦନ ବଢ଼ାଇ କୋରାପୁଟକୁ ମାଣ୍ଡିଆର ମୁଖ୍ୟକେନ୍ଦ୍ର କରିବା ପାଇଁ ପ୍ରୟାସ ଆରମ୍ଭ ହୋଇଛି ।

ଉତ୍ତମ ପୋଷକତତ୍ତ୍ୱ ରହୁଥିବାରୁ ଏହାକୁ ପ୍ରାୟ ସମସ୍ତେ ଖାଦ୍ୟ ଭାବେ ଗ୍ରହଣ କରନ୍ତି । ମାଣ୍ଡିଆ ଲଡୁ, ମାଣ୍ଡିଆରେ ପ୍ରସ୍ତୁତ ପିଠା ଏବଂ ସୁପ୍ କରି ଲୋକେ ଏହାକୁ ଖାଇଥାଆନ୍ତି । ପୂର୍ବରୁ କୋରାପୁଟରେ ଲୋକେ ସେମାନଙ୍କ ଆବଶ୍ୟକତା ଅନୁସାରେ ଚାଷ କରୁଥିଲେ । ପରିବାର ପାଇଁ ଯେତିକି ଦରକାର ସେତିକି ଚାଷ କରୁଥିଲେ । ବର୍ଷଯାକର ଖାଦ୍ୟ ସାଇତି ରଖୁଥିଲେ । ଏହାର ପୋଷକ ଗୁଣ ଜାଣିବା ପରେ ଏବେ ଏହି ମାଣ୍ଡିଆର ଚାହିଦା ବଢ଼ିବା ସହିତ ବ୍ୟବସାୟର ବାଟ ଖୋଲିଛି ।

ସେହିଭଳି କନ୍ଧମାଳ ଜିଲ୍ଲାରେ ପାରମ୍ପରିକ ଶସ୍ୟ ସଂରକ୍ଷଣ ପର୍ବ 'ବୁର୍ଲଙ୍ଗ ଯାତ୍ରା'ର ପୁନଃ ଆରମ୍ଭ ହୋଇଛି । ବର୍ଷକୁ ଥରେ ଅନୁଷ୍ଠିତ ହେଉଥିବା ଏହି ଯାତ୍ରାରେ ଚାଷୀମାନେ ବିଭିନ୍ନ ପ୍ରକାରର ଦେଶୀ ମାଣ୍ଡିଆ ବିହନ ଏକତ୍ର କରନ୍ତି ଏବଂ ପାରମ୍ପରିକ ମାଣ୍ଡିଆ ଚାଷର ଜ୍ଞାନ କୌଶଳ ସମ୍ପର୍କରେ ପରସ୍ପର ଆଲୋଚନା କରନ୍ତି । ପୁରୁଷାନୁକ୍ରମେ ଅର୍ଜିତ କୃଷି ଜ୍ଞାନକୁ ଏହି 'ବୁର୍ଲଙ୍ଗ ଯାତ୍ରା'ରେ ପ୍ରଦର୍ଶନ କରନ୍ତି । ଏହି ପର୍ବ ସହ ମିଲେଟ୍ସ ଚାଷ କରୁଥିବା ସ୍ଥାନୀୟ ଅଧିବାସୀଙ୍କ ଜୀବିକାରେ ନୂଆ ଫର୍ଦ୍ଦ ଯୋଡ଼ି ହୋଇଛି ।

ମୟୂରଭଞ୍ଜ ଜିଲ୍ଲାରେ ସାନ୍ତାଳମାନଙ୍କ ଗ୍ରାମପୂଜକ ବର୍ଷର ପ୍ରଥମ ଗୁଣ୍ଡଲି ମାଣ୍ଡିଆକୁ ସାନ୍ତାଳ ଦେବତାଙ୍କୁ ଅର୍ପଣ କରିବାର ପରମ୍ପରା ରହିଛି । ସାନ୍ତାଳୀ କୃଷି ସଂସ୍କୃତିରେ ମାଣ୍ଡିଆର ଗୁରୁତ୍ୱ ଯେ ଅଧିକ, ତାହା ଏଥିରୁ ସ୍ପଷ୍ଟ ଅନୁମେୟ ହୁଏ । ସେହିପରି ଦକ୍ଷିଣ ଓଡ଼ିଶା ସୀମାନ୍ତରେ ଥିବା ବସ୍ତର ଅଂଚଳର ଆଦିବାସୀମାନେ କୋଦ ମିଲେଟର ନଡ଼ାକୁ କାଦୁଅ ସହ ମିଶାଇ ଘର କାନ୍ଥ ନିର୍ମାଣ କରନ୍ତି । ବସ୍ତର ଜନଜାତିଙ୍କ ମୁଖ୍ୟ ପର୍ବ ହେଉଛି ଗାଦି ପର୍ବ । ଏହି ପର୍ବରେ ମାଣ୍ଡିଆ ପ୍ରସ୍ତୁତ ଖାଦ୍ୟକୁ ଭୋଗ ରୂପେ ଅର୍ପଣ କରାଯାଏ ଏବଂ ସେହି ପ୍ରସାଦକୁ ଆମ୍ବ ତେନ୍ତୁଳି ଗଛ ଉପରେ ସିଞ୍ଚିବା ଦ୍ୱାରା, ଆସନ୍ତା ବର୍ଷ ଭଲ ଆମ୍ବ ତେନ୍ତୁଳି ଫଳିଥାଏ ବୋଲି ସେମାନେ ବିଶ୍ୱାସ କରନ୍ତି । ଆଉ କିଛି ଜନଜାତି ସମ୍ପ୍ରଦାୟ ମାଣ୍ଡିଆ ଦାନା ସହ ବିଭୂତି ଓ ଲୁଣକୁ ନେଇ କପଡ଼ାରେ ବାନ୍ଧି ତାବିଜ୍ ତିଆରି କରି ପିନ୍ଧନ୍ତି । ଏହି ତାବିଜ ପିନ୍ଧିବା ଦ୍ୱାରା କୁଦୃଷ୍ଟିରୁ ରକ୍ଷା ପାଆନ୍ତି ବୋଲି ସେମାନଙ୍କ ବିଶ୍ୱାସ ରହିଛି । ଏହି ବିଶ୍ୱାସହିଁ କାଳ କାଳ ଏହି ଶସ୍ୟକୁ ସାଇତି ରଖିଛି ।

ଉତ୍ତର ଓଡ଼ିଶାରେ କେନ୍ଦୁଝର ଜିଲ୍ଲାର ଜନଜାତି ଖାଦ୍ୟ ପରମ୍ପରାରେ 'ମାଣ୍ଡିଆ' ପ୍ରମୁଖ ଅଙ୍ଗ ହୋଇ ରହିଥିଲା । ଏହି ପୁଷ୍ଟିକର ଶସ୍ୟ ଜନଜାତି ସଂସ୍କୃତି ସହିତ ଜଡ଼ିତ । ବଣ ପାହାଡ଼ ଘେରା ଅଞ୍ଚଳରେ ବସବାସ କରୁଥିବା ଜନଜାତି ସଂପ୍ରଦାୟର ଚାଷୀମାନଙ୍କ ଖାଦ୍ୟ, ପୁଷ୍ଟି ଏବଂ ଆୟର ସୁରକ୍ଷା ଯୋଗାଇବାରେ ଏହା ବେଶ୍ ମହତ୍ୱ ରଖେ । ମାଣ୍ଡିଆ ଚାଷ ପାଇଁ କମ୍ ଜଳର ଆବଶ୍ୟକତା ଏବଂ ସ୍ଥାନୀୟ ଜଳବାୟୁ ଓ ପାଣିପାଗ ଏଥିପାଇଁ ଉପଯୋଗୀ ହୋଇଥିବାରୁ ପୂର୍ବରୁ କେନ୍ଦୁଝର ଜିଲ୍ଲାର ଜନଜାତି ସମୁଦାୟ ବହୁକାଳରୁ ମାଣ୍ଡିଆ ଚାଷ କରିଆସୁଛନ୍ତି । ମାଣ୍ଡିଆରେ ଚାଉଳ ଓ ଗହମ ତୁଳନାରେ ୩୦ ଗୁଣ ଅଧିକ କାଲସିୟମ୍, ୪ ଗୁଣ ଅଧିକ ଲୌହସାର, ତନ୍ତୁ, ଧାତବ ଲବଣ ଏବଂ ଆଣ୍ଟିଅକ୍ସିଡାଣ୍ଟ୍ ରହିଛି । ଏତଦ୍‌ବ୍ୟତୀତ ବୃକକ ଓ ଯକୃତର କାର୍ଯ୍ୟକ୍ଷମତାକୁ ବୃଦ୍ଧି କରିବାରେ ଏବଂ କୋଲେଷ୍ଟରଲକୁ କମ୍ କରିବାରେ ସହାୟକ ହୋଇଥାଏ ।

ତେଣୁ ମାଣ୍ଡିଆର ବହୁମୁଖୀ ଗୁରୁତ୍ୱକୁ ଉପଲବ୍ଧି କରି ମିଳିତ ଜାତିସଂଘ ପକ୍ଷରୁ ୨୦୨୩ କୁ 'ଅନ୍ତର୍ଜାତୀୟ ମିଲେଟ ବର୍ଷ' ଭାବେ ଘୋଷଣା କରାଯାଇଛି । ମିଲେଟର ବିଭିନ୍ନ ପ୍ରଜାତି ସଂରକ୍ଷଣ ଏବଂ ଏବେ ଆନ୍ତର୍ଜାତିକ ସ୍ତରରେ ସେସବୁର ବହୁଳ ପ୍ରଚାର ଓ ପ୍ରସାର ପଛରେ ଓଡ଼ିଶାର ଜନଜାତି ସଂସ୍କୃତିର ନିଶ୍ଚିତ ରୂପେ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଜୀବନ, ଜୀବିକା, ପରମ୍ପରା ଓ ଚଳଣି ସହିତ ମାଣ୍ଡିଆର ସଂପର୍କ ନିବିଡ଼ ଓ ଖୁବ୍ ପୁରୁଣା । ସେଇ ସଂପର୍କ ଯାହା ଏତେ ଶହ ବର୍ଷ ଧରି ମାଣ୍ଡିଆକୁ ସାଇତି ରଖିଥିଲା ଓ ଆପଣାର ମୁଖ୍ୟ ଖାଦ୍ୟ ଭାବେ ବ୍ୟବହାର କରି ଆସିଥିଲା, ଏବେ ଆମ ସାମ୍ନାରେ ଆସି ନୂଆ ରୂପରେ ଉଭା ହୋଇଛି । ଏହାକୁ ସମସ୍ତେ ଆଦର କରୁଛନ୍ତି ଓ ଆପଣେଇ ନେଇଛନ୍ତି । ତେଣୁ ମାଣ୍ଡିଆ ଆମ ନିଛକ ଓଡ଼ିଆ ସଂସ୍କୃତିକୁ ଫେରିଛି ।

ଶିକ୍ଷାବିତ୍
ଆଚାର୍ଯ୍ୟ ବିହାର, ଭୁବନେଶ୍ୱର

# ମାଣ୍ଡିଆ ଆଣିଛି ଅଭିବୃଦ୍ଧି ସ୍ୱାସ୍ଥ୍ୟ ସମ୍ପଦର ହେଉଛି ବୃଦ୍ଧି

**ସବ୍ୟସାଚୀ ମିଶ୍ର**

ବ୍ୟସ୍ତବହୁଳ ଜୀବନ ଭିତରେ ବର୍ତ୍ତମାନ ସୁସ୍ଥ ନିରାମୟ ରହିବା ଚିନ୍ତା ସମସ୍ତଙ୍କୁ ଘାରିଛି । ବ୍ୟାୟାମ ଓ ଯୋଗ ସହିତ ସନ୍ତୁଳିତ ଖାଦ୍ୟର ମଧ୍ୟ ଆବଶ୍ୟକତା ରହିଛି । ଏଥିପାଇଁ ସମସ୍ତେ ଶରୀର ଉପଯୋଗୀ ପୋଷଣଯୁକ୍ତ ଖାଦ୍ୟ ପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି । ସୁସ୍ଥ ରହିବା ପାଇଁ ପ୍ରତ୍ୟେକଙ୍କୁ ପୋଷଣଯୁକ୍ତ ଖାଦ୍ୟ ଏବଂ ଏକ ନିର୍ଦ୍ଦିଷ୍ଟ ପରିମାଣର କ୍ୟାଲୋରୀ ଆବଶ୍ୟକ । ବହୁ ପୁରାତନ କାଳରୁ ପୁଷ୍ଟିଶସ୍ୟଯୁକ୍ତ ଖାଦ୍ୟ



ନିଜର ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିଆସିଛି । ମାଣ୍ଡିଆ, ସୁଆଁ, କାଙ୍ଗୁ, ବାଜରା, କୋଦ, ସୁଆଁ ଇତ୍ୟାଦି ପୁଷ୍ଟିଶସ୍ୟ ଅନ୍ତର୍ଭୁକ୍ତ । ପୁଷ୍ଟିଶସ୍ୟ ଆମ ସ୍ୱାସ୍ଥ୍ୟ ପାଇଁ ଅତ୍ୟନ୍ତ ଲାଭଦାୟକ । ବର୍ତ୍ତମାନ ଏଥିରୁ ପ୍ରସ୍ତୁତ ବିଭିନ୍ନ ଖାଦ୍ୟ ବିଶେଷକରି ସ୍ୱାସ୍ଥ୍ୟ ଅନୁରାଗୀଙ୍କ ମଧ୍ୟରେ ଏକ ନିଆରା ସ୍ଥାନ ସୃଷ୍ଟି କରିପାରିଛି ।

ଖାଦ୍ୟଥାଳିରୁ ହଜିଯାଇଥିବା ପୁଷ୍ଟିଶସ୍ୟକୁ ଚାଷକ୍ଷେତ ଓ ଖାଦ୍ୟଥାଳିରେ ପୁଣି ଥରେ ସାମିଲ କରିବା ପାଇଁ 'ଓଡ଼ିଶା ମିଲେଟ୍ସ ମିଶନ' ପକ୍ଷରୁ ପ୍ରୟାସ ଜାରି ରହିଛି । କୃଷି ଓ କୃଷକ ସଶକ୍ତିକରଣ ବିଭାଗ ଅଧୀନରେ ୨୦୧୭ ମସିହାରୁ 'ଓଡ଼ିଶା ମିଲେଟ୍ସ ମିଶନ' ଏକ ପ୍ରମୁଖ କାର୍ଯ୍ୟକ୍ରମଭାବେ କାର୍ଯ୍ୟକାରୀ ହୋଇଆସୁଛି । ପୁଷ୍ଟିଶସ୍ୟକୁ ବ୍ୟାପକ କରିବା ପାଇଁ ରାଜ୍ୟ ସରକାରଙ୍କ ତରଫରୁ ପ୍ରତ୍ୟେକ ବର୍ଷ ନଭେମ୍ବର ମାସ ୧୦ ତାରିଖକୁ 'ମାଣ୍ଡିଆ ଦିବସ' ରୂପେ ପାଳନ କରାଯାଉଛି । ପୁଷ୍ଟିଶସ୍ୟକୁ ବିଶ୍ୱବ୍ୟାପୀ କରିବା ପାଇଁ ମିଳିତ ଜାତିସଂଘ ତରଫରୁ ୨୦୨୩ ବର୍ଷକୁ 'ଅନ୍ତର୍ଜାତୀୟ ପୁଷ୍ଟିଶସ୍ୟ ବର୍ଷ' ଭାବେ ପାଳନ କରାଯାଉଛି । ରାଜ୍ୟରେ ପୁଷ୍ଟିଶସ୍ୟକୁ ପୁନର୍ଜୀବିତ କରିବାରେ 'ଓଡ଼ିଶା ମିଲେଟ୍ସ ମିଶନ' ବିଭିନ୍ନ ପଦକ୍ଷେପ ନେବା ସହ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ପୂର୍ବରୁ ମିଲେଟ୍ସ ବା ପୁଷ୍ଟିଶସ୍ୟ ଆମ ଭାରତୀୟମାନଙ୍କର ଖାଦ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଆସୁଛି । ଯାହାକୁ ବର୍ତ୍ତମାନ 'ଶ୍ରୀ ଅନ୍ନ'ର ଆଖ୍ୟା ଦିଆଯାଇଛି । ଏହାର ଅର୍ଥ ହେଉଛି ଖାଦ୍ୟଶସ୍ୟ ମଧ୍ୟରେ ସର୍ବୋତ୍ତମ । ଆମ ଦୈନନ୍ଦିନ ଜୀବନରେ ଏହି ଖାଦ୍ୟର ଅନେକ ଗୁରୁତ୍ୱପୂର୍ଣ୍ଣ ଉପକାରିତା ରହିଛି । ପିଲାଟି ଦିନରୁ ଆମ ଘରେ ମିଲେଟ୍ ଏକ ଦୈନନ୍ଦିନ ଖାଦ୍ୟଭାବେ ରହିଆସିଛି । ମାଣ୍ଡିଆ ଜାଉରେ ଗୁଡ଼ ଓ ଦହି ମିଶାଇ ଆଜି ବି ସକାଳ ଜଳଖିଆରେ ଖାଏ । ଏହା ମୋର ପ୍ରଥମ ପସନ୍ଦ । ପୂର୍ବରୁ ଏହି ପୁଷ୍ଟିଶସ୍ୟକୁ ଗରିବ ଲୋକଙ୍କ ଖାଦ୍ୟ କୁହାଯାଉଥିଲା । କିନ୍ତୁ ଏବେ ସମସ୍ତେ ଏହି ପୁଷ୍ଟିଶସ୍ୟକୁ ଆପଣାଉଛନ୍ତି । ଏହା କେବଳ ଆଦିବାସୀ

ଅଧ୍ୟୁଷିତ ଅଞ୍ଚଳରେ ସୀମିତ ହୋଇ ରହିନାହିଁ ବରଂ ଏହା ଦେଶ ବିଦେଶରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛି । ଗାଁରୁ ସହର, ଦେଶରୁ ବିଦେଶ ସବୁଠି ପୁଷ୍ଟିଶସ୍ୟ ନିଜର ପରିଚୟ ସୃଷ୍ଟି କରିପାରିଛି । 'ଓଡ଼ିଶା ମିଲେଟ୍ସ ମିଶନ' ଆରମ୍ଭ ହେବା ଦିନରୁ ଏହାର ପ୍ରଚାରପ୍ରସାର ଦିଗରେ ଲୋକଙ୍କୁ ସଚେତନ କରିବାର ସୁଯୋଗ ମିଳିଥିଲା । କେବଳ ଆଦିବାସୀ ଅଞ୍ଚଳରେ ସୀମିତ ଥିବା ପୁଷ୍ଟିଶସ୍ୟ ସମ୍ପ୍ରତି ଦେଶ ବିଦେଶରେ ପରିଚୟ ସୃଷ୍ଟି କରିପାରିଛି । ଏହାସହିତ 'ଓଡ଼ିଶା ମିଲେଟ୍ସ ମିଶନ'କୁ ମଧ୍ୟ ଆଦୃତି ମିଳିପାରିଛି । ଏହି ମିଶନ ମାଧ୍ୟମରେ ଚାଷୀ ଭାଇମାନେ ସିଧାସଳଖ ଭାବେ ଉପକୃତ ହୋଇପାରୁଛନ୍ତି । ଆଜିକାଲି ସମସ୍ତେ ମାଣ୍ଡିଆର ଉପକାରିତା ଜାଣିବା ପରେ ତା'ର ଗୁରୁତ୍ୱ ବଢିଯାଇଛି । ଏଥିରେ ବିଭିନ୍ନ ପ୍ରକାରର ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ ହୋଇପାରୁଛି । ମାଣ୍ଡିଆ କେକ୍, ଲଡୁ, ଜୁସ୍, ଚା', ସୁପ୍, ପିଠା, ଖିରି, ଚକୁଳି, ବିରିୟାନୀ ଆଦି ଅନେକ ପ୍ରକାରର ଖାଦ୍ୟ ପ୍ରସ୍ତୁତ କରାଯାଇପାରୁଛି । ଏବେ ବିଭିନ୍ନ ତାରକା ହୋଟେଲ ଓ ରେଷ୍ଟୋରାଁର ଖାଦ୍ୟ ତାଲିକାରେ ପୁଷ୍ଟିଶସ୍ୟରୁ ପ୍ରସ୍ତୁତ ଖାଦ୍ୟକୁ ସାମିଲ କରାଯାଇଛି । କେବଳ ସେତିକି ନୁହେଁ, ଆମକୁ ସୁସ୍ଥ ରହିବା ପାଇଁ ପୁଷ୍ଟିଶସ୍ୟକୁ ଆପଣାଇବାକୁ ପଡିବ । କାରଣ ମାଣ୍ଡିଆ ପୁଷ୍ଟିରେ ଭରପୂର ରହିଥାଏ । ଏହା ସୁସ୍ଥ ଶରୀର ପାଇଁ ଲାଭଦାୟକ ହୋଇଥିବାରୁ ମାଣ୍ଡିଆର ବେଶ୍ ଆଦର ବଢିଛି । ମାଣ୍ଡିଆରେ କାଲସିୟମ୍, ଭିଟାମିନ୍, ଶ୍ୱେତସାର, ଆଇରନ୍, ମ୍ୟାଗ୍ନେସିୟମ୍ ଆଦି ରହିଥାଏ । ମଧୁମେହ, ହୃଦ୍‌ରୋଗ, ମେଦ ବହୁଳତା ଭଳି ରୋଗ ଉପଶମରେ ପୁଷ୍ଟିଶସ୍ୟ ଖାଦ୍ୟ ସାହାଯ୍ୟ କରେ । ଏମିତିକି ଦେଶ ବିଦେଶରେ ଅନେକ ସ୍ୱାସ୍ଥ୍ୟପ୍ରେମୀଙ୍କ ଗୁରୁତ୍ୱପୂର୍ଣ୍ଣ ଖାଦ୍ୟ ପାଲଟିଯାଇଛି ।

ମାଣ୍ଡିଆ ଯେ କେବଳ ଆମକୁ ସୁସ୍ଥ ରଖିବାରେ ସହାୟକ ହୁଏ, ତାହା ନୁହେଁ ବରଂ ମାଣ୍ଡିଆରୁ ପ୍ରସ୍ତୁତ ଖାଦ୍ୟ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଆର୍ଥିକ ସହାୟତା ଯୋଗାଉଛି । ଆମ ପରମ୍ପରା ଓ ସଂସ୍କୃତିର ନୂତନ ପରିଚାୟକ ସାଜିଛି । ସୁସ୍ଥ ଜୀବନ ଜୀଇଁବା ଓ ସୁସ୍ଥ ସମାଜ ଗଠନ କରିବା ପାଇଁ କିଛି ବର୍ଷ ତଳୁ ପାସୋରି ଯାଇଥିବା ମାଣ୍ଡିଆ ଏବେ ପୁଣିଥରେ ସମସ୍ତଙ୍କ ମଧ୍ୟରେ ଆଦୃତ ହୋଇପାରିଛି । ଏବେ ସମୟ ଆସିଛି ପୁଷ୍ଟିଶସ୍ୟକୁ ଆମ ଖାଇବା ଥାଳିରେ ସ୍ଥାନ ଦେଇ ସୁସ୍ଥ ନିରାମୟ ଜୀବନଯାପନ କରିବା । ପୁଷ୍ଟିଶସ୍ୟଭିତ୍ତିକ ଖାଦ୍ୟ ଏବେ ଆକର୍ଷଣ ପାଲଟିଛି । ଅଙ୍ଗନୱାଡି, ବିଦ୍ୟାଳୟ, ହଷ୍ଟେଲ ଏବଂ କ୍ରୀଡ଼ାବିତ୍‌ମାନଙ୍କ ଖାଦ୍ୟ ତାଲିକାରେ ପୁଷ୍ଟିଶସ୍ୟକୁ ସାମିଲ କରାଯାଇଛି । ପୁଷ୍ଟିଶସ୍ୟର ଉତ୍ପାଦନ ବୃଦ୍ଧି ସହ ଏଥିନିମନ୍ତେ ସଠିକ୍ ବଜାର ସୁବିଧା ଓ ପୁନର୍ବାର ପୁଷ୍ଟିଶସ୍ୟକୁ ଲୋକପ୍ରିୟ କରାଇବାରେ 'ଓଡ଼ିଶା ମିଲେଟ୍ସ ମିଶନ' ମୁଖ୍ୟ ଭୂମିକା ଗ୍ରହଣ କରିଛି । ମାନ୍ୟବର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ଦୂରଦୃଷ୍ଟି ଯୋଗୁଁ ଏହି ପ୍ରୟାସ ସାରା ଦେଶବିଦେଶରେ ପ୍ରଶଂସା ସାଉଁଟିଛି । ମାଣ୍ଡିଆ ତଥା ଅନ୍ୟ ପୁଷ୍ଟିଶସ୍ୟ ଉତ୍ପାଦନ ଓ ଏହାର ବ୍ୟବହାର କ୍ଷେତ୍ରରେ ଓଡ଼ିଶାର ସଫଳତା ଅନ୍ୟ ରାଜ୍ୟ ପାଇଁ ପ୍ରେରଣା ହୋଇଛି । ଏବେ ଅନ୍ୟ ରାଜ୍ୟମାନେ 'ଓଡ଼ିଶା ମିଲେଟ୍ସ ମିଶନ' ଢାଞ୍ଚାରେ ପୁଷ୍ଟିଶସ୍ୟ ଉତ୍ପାଦନ ଓ ପ୍ରଚାର ପ୍ରସାରକୁ ଆପଣାଇଛନ୍ତି, ଯାହା ଆମ ପାଇଁ ଗର୍ବ ଓ ଗୌରବର ବିଷୟ ।

ଓଡ଼ିଆ ଚଳଚ୍ଚିତ୍ର ଅଭିନେତା

❖ ❖ ❖

# ମିଲେଟ୍ ବା ପୁଷ୍ଟିଶସ୍ୟର ସ୍ୱାସ୍ଥ୍ୟଗତ ଉପାଦେୟତା

**ଅରୁଣ କୁମାର ପାତ୍ର**

ଧାନ, ଗହମ, ମକା ଆଦି ଶସ୍ୟ ଜାତୀୟ ଫସଲ ଆମ ଦେଶରେ ସାଧାରଣତଃ ମୁଖ୍ୟ ଫସଲଭାବେ ଚାଷ କରାଯାଇଥାଏ । ଅନ୍ୟ ଏକ ଶ୍ରେଣୀର ଶସ୍ୟ ହେଉଛି ମିଲେଟ୍ ବା ପୁଷ୍ଟିଶସ୍ୟ । ଏହା ଭାରତ ସମେତ ନାଇଜେରିଆ, ବିଶେଷତଃ ଏସିଆ ଓ ଆଫ୍ରିକାରେ ମଧ୍ୟ ଚାଷ କରାଯାଇଥାଏ । ପ୍ରାୟ ୪୦୦୦ବର୍ଷ ପୂର୍ବେ ଏସବୁ ଅଞ୍ଚଳରେ ମିଲେଟ୍ ଚାଷ କରାଯାଉଥିଲା । ମଧ୍ୟଯୁଗରେ ଏଗୁଡ଼ିକ ୟୁରୋପରେ ମୁଖ୍ୟ ଶସ୍ୟ ଜାତୀୟ ଫସଲଭାବେ ବିବେଚିତ ହେଉଥିଲା । ଯଦିଓ ମିଲେଟ୍ ଯୁକ୍ତରାଷ୍ଟ୍ର ଆମେରିକା ଓ ପଶ୍ଚିମ ୟୁରୋପରେ ଗୋଖାଦ୍ୟ ଓ ନଡ଼ା ପାଇଁ ବ୍ୟବହାର କରାଯାଉଥିଲା ଏବେ ସମଗ୍ର ବିଶ୍ୱରେ ବିକାଶଶୀଳ ରାଷ୍ଟ୍ରରେ ଏହା ଖାଦ୍ୟ ଭାବେ ବ୍ୟବହୃତ ହେଉଅଛି । ଆମ ଦେଶରେ ୧୧ ପ୍ରକାର ମିଲେଟ୍ ଚାଷ ହେଉଥିବାବେଳେ ଆମ ରାଜ୍ୟରେ ଯଅ (ସୋରଗମ୍), ଚୀନା (ପ୍ରୋସୋ ମିଲେଟ୍), ବାଜରା (ପର୍ଲ ମିଲେଟ୍), କାଙ୍ଗୁ (ଫକ୍ସଟେଲ୍ ମିଲେଟ୍), ମାଣ୍ଡିଆ (ଫିଙ୍ଗର ମିଲେଟ୍), ସୁଆଁ(ଲିଟିଲ ମିଲେଟ୍), କୋଦ(କୋଦ ମିଲେଟ୍) ଚାଷ କରାଯାଇପାରୁଛି । ମାଣ୍ଡିଆ ଆମ ରାଜ୍ୟରେ ଅଧିକ ପରିମିତ ଜମିରେ ଚାଷ କରାଯାଏ । ମାଣ୍ଡିଆର ବହୁବିଧ ସ୍ୱାସ୍ଥ୍ୟଗତ ଉପକାରିତା ସମ୍ପ୍ରତି ଜଣାପଡ଼ିଛି । ମାଣ୍ଡିଆରେ ଅଧିକ ପୁଷ୍ଟିସାର, ଖଣିଜଲବଣ ଓ ସ୍ନେହସାର ଥିବାରୁ ଏହା ଲୋକମାନଙ୍କ ମଧ୍ୟରେ ଖୁବ୍ ଆଦୃତ ହୋଇଥାଏ । ମାଣ୍ଡିଆକୁ ବହୁ ବର୍ଷ ପର୍ଯ୍ୟନ୍ତ ସାଇତି ରଖିହୁଏ ଓ ଆବଶ୍ୟକ ବେଳେ ବ୍ୟବହାର ମଧ୍ୟ କରିହୁଏ ।



ମାଣ୍ଡିଆ ମଞ୍ଜିରେ ଖାଦ୍ୟସାର ମୂଲ୍ୟ ଉତ୍ତମ ଥିବାରୁ ଏହାର ଚାହିଦା ଅଧିକ ରହିଛି । ଏଥିରେ ଲେସିଥିନ ଓ ମେଥିଓନିନ୍ ଭଳି ଆମିନୋ ଏସିଡ୍ ରହିଛି । ଯକୃତରୁ ଏହା ଚର୍ବି ହ୍ରାସ କରିଦିଏ ଓ ଉତ୍ତମ ସ୍ୱାସ୍ଥ୍ୟ ରକ୍ଷା କରେ । ମାଣ୍ଡିଆ ମଣିଷ ଶରୀରରେ ନିମ୍ନ କେତେକ କାର୍ଯ୍ୟ କରିଥାଏ ଯଥା- ଏହା ଶରୀରର ଓଜନ ହ୍ରାସ କରିଥାଏ, କାଲସିୟମ୍ର ଏକ ଚମତ୍କାର ଉତ୍ସ ହୋଇଥିବାରୁ ଶରୀରର ଅସ୍ଥିକୁ ମଜଭୁତ କରିଥାଏ, ଶରୀରରେ ରକ୍ତ ଶର୍କରାକୁ ନିୟନ୍ତ୍ରଣ କରେ ଏବଂ ଶରୀରରେ ଥିବା କ୍ଷତିକାରକ କୋଲେଷ୍ଟେରଲ୍କୁ କମାଇଥାଏ । ତେଣୁ ହୃଦ୍‌ଘାତ ହୋଇନଥାଏ । ଏହା ପୁଷ୍ଟିସାର ଓ ଆମିନୋ ଅମ୍ଳର ଉତ୍ତମ ଉତ୍ସ । ମାଣ୍ଡିଆ ରକ୍ତହୀନ(ଆନିମିଆ) ରୋଗୀଙ୍କ ପାଇଁ ବିଶେଷ ଉପଯୋଗୀ । ଏହା ହଜମରେ ସାହାଯ୍ୟ କରେ । ମାଆର କ୍ଷୀର ବୃଦ୍ଧି କରେ । ଶରୀରରେ ଚର୍ମର ସୁରକ୍ଷା କରେ ।

### ମାଣ୍ଡିଆର ୭ ଗୋଟି ଉପକାରିତା

୧-ମାଣ୍ଡିଆର ସ୍ୱାସ୍ଥ୍ୟଗତ ଉପକାରିତା : ମାଣ୍ଡିଆ ଦାନା ପୁଷ୍ଟିଯୁକ୍ତ ଚାଉଳ ସହ ତୁଳନୀୟ । କେତେକ ମାଣ୍ଡିଆ କିସମରେ ଚାଉଳ ତୁଳନାରେ ଅଧିକ ପୁଷ୍ଟିସାର ରହିଥାଏ । ମାଣ୍ଡିଆର ପୁଷ୍ଟିସାର ପରିମାଣ ଅଦ୍ୱିତୀୟ । ମୁଖ୍ୟ ପୁଷ୍ଟିସାର ହେଉଛି ଲ୍ୟୁସିନ୍, ଯାହାକି ସହଜରେ ଶରୀରରେ ପ୍ରବେଶ କରିଥାଏ । ଏହା ବ୍ୟତୀତ ଆଖିଦୃଶିଆଭାବେ ଟ୍ରିପ୍‌ଟୋଫେନ୍, ସିସ୍‌ଟିନ୍, ମେଥିଓନାଇନ୍ ଏବଂ ଅନ୍ୟ ଆବଶ୍ୟକୀୟ ଆମିନୋ ଏସିଡ୍ ରହିଥାଏ । ଏଗୁଡ଼ିକ ମଣିଷ ସ୍ୱାସ୍ଥ୍ୟ ପାଇଁ ଏକାନ୍ତ ଆବଶ୍ୟକ ଯାହାକି ଅଧିକାଂଶ ଶସ୍ୟରେ ନଥାଏ । ଅଧିକ ପୁଷ୍ଟିସାର ରହୁଥିବାରୁ ଅପପୁଷ୍ଟି ଦୂର କରିବାରେ ମାଣ୍ଡିଆର ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

୨-ମାଣ୍ଡିଆ ଖଣିଜ ଲବଣର ଉତ୍ତମ ଉତ୍ସ : ଅନ୍ୟ ଶସ୍ୟ ତୁଳନାରେ ମାଣ୍ଡିଆର କାଲ୍‌ସିୟମ୍ ପରିମାଣ ୫-୩୦ ଗୁଣ ଅଧିକ ଥାଏ । ଏହା ମଧ ଫସ୍‌ଫରସ୍, ପୋଟାସିୟମ୍ ଓ ଲୌହରେ ସମୃଦ୍ଧ । ଅସ୍ଥିର ସାନ୍ଦ୍ରତା ଓ ସ୍ୱାସ୍ଥ୍ୟ ବଜାୟ ରଖିବାରେ କାଲସିୟମ୍‌ର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥାଏ । ତେଣୁ ''ଅଷ୍ଟିଓପୋରେସିସ୍'' ଆଶଙ୍କା ଥିବା କିମ୍ବା କମ୍ ହିମୋଗ୍ଲୋବିନ୍ ଥିବା ଲୋକଙ୍କ ପାଇଁ ମାଣ୍ଡିଆ ଏକାନ୍ତ ଆବଶ୍ୟକ ହୋଇଥାଏ । ଯୁକ୍ତରାଷ୍ଟ୍ର ଜାତୀୟ ଏକାଡେମୀ ଦ୍ୱାରା ପ୍ରକାଶିତ ପୁସ୍ତକ ''ଦ ଲଷ୍ଟ କ୍ରପ ଅଫ୍ ଆଫ୍ରିକା'' ମାଣ୍ଡିଆକୁ ସୁପର ସିରିଏଲ୍ ଭାବେ ଅଭିହିତ କରିଛି । ମାଣ୍ଡିଆ ପ୍ରତି ବିଶ୍ୱର ଦୃଷ୍ଟିଭଙ୍ଗୀ ସମ୍ପୂର୍ଣ୍ଣ ଭାବେ ବଦଳିବା ଆବଶ୍ୟକ । ସମସ୍ତ ମୁଖ୍ୟ ଶସ୍ୟଜାତୀୟ ଫସଲ ମଧ୍ୟରୁ ମାଣ୍ଡିଆ ଖୁବ୍ ପୁଷ୍ଟିଯୁକ୍ତ । ଉଗାଣ୍ଡା ଏବଂ ଦକ୍ଷିଣ ସୁଦାନ୍‌ର ଲୋକମାନେ ଦିନରେ ଥରେ ମାତ୍ର ମାଣ୍ଡିଆ ଖାଇବା ଯୋଗୁଁ ଖୁବ୍ ସ୍ୱାସ୍ଥ୍ୟବାନ୍ ଓ ବଳିଷ୍ଠ ଚେହେରା ରଖିଛନ୍ତି ।

୩- ମାଣ୍ଡିଆ ଡାଏବେଟିସ୍ ନିୟନ୍ତ୍ରଣ କରେ : ସମ୍ପ୍ରତି ସମଗ୍ର ବିଶ୍ୱରେ ମଧୁମେହ ରୋଗ କାୟାବିସ୍ତାର କରିଚାଲିଛି । ଏଥିପାଇଁ ଜଟିଳ ଶ୍ୱେତସାର ସହିତ ଅଧିକ ତନ୍ତୁଯୁକ୍ତ ଖାଦ୍ୟ ଓ ଉପଯୋଗୀ ଫାଇଟୋକେମିକାଲ୍ ଯୁକ୍ତ ଖାଦ୍ୟ ଆବଶ୍ୟକ ହେଲାଣି । ଆମ ଶରୀରର ଦେଖାଯାଉଥିବା ରୋଗଗୁଡ଼ିକର ପ୍ରତିଷେଧକ ପାଇଁ ରାସାୟନିକ ଯୌଗିକଯୁକ୍ତ ଫାଇଟୋକେମିକାଲ୍‌ଗୁଡ଼ିକୁ ମୁଖ୍ୟ ଉପାଦାନ ଭାବେ ବିବେଚନା କରାଯାଏ । ଏ ସମସ୍ତ ଉପାଦାନ ଶସ୍ୟର ଉପରସ୍ତର କିମ୍ବା ଚୋପା ଭିତରେ ରହିଥାଏ । ତେଣୁ ସମସ୍ତ ଦାନା ଖାଇବା ଭଲ । ମାଣ୍ଡିଆ ଦାନାର ଚୋପାରେ ବାର୍ଲି,ଚାଉଳ,ମକା ଓ ଗହମ ତୁଳନାରେ ଅଧିକ ପଲିଫିନଲ୍ ଥାଏ । ଉଦାହରଣ ସ୍ୱରୂପ- ଚାଉଳ ଅପେକ୍ଷା ଏଥିରେ ୪୦ଗୁଣ ଓ ଗହମ ତୁଳନାରେ ୫ଗୁଣ ଫିନୋଲିକ୍ ଅଂଶ ଅଧିକ ଥାଏ । ଲଘୁଶସ୍ୟ ମଧ୍ୟରେ ମାଣ୍ଡିଆ କାଙ୍ଗୁ ସହିତ ଓ ତା' ପରେ କୋଦ ସହିତ ତୁଳନୀୟ ।

୪- ମାଣ୍ଡିଆର ଅଣୁଜୀବ ପ୍ରତିରୋଧୀ ଗୁଣ : ମାଣ୍ଡିଆ କେତେକ ଅଣୁଜୀବଙ୍କ କାର୍ଯ୍ୟକୁ ପ୍ରତିହତ କରିଥାଏ । ବାସିଲସ୍ ସିରିଅସ୍ ନାମକ ବୀଜାଣୁ ଖାଦ୍ୟକୁ ବିଷାକ୍ତ କରିଥାଏ । ସାଲ୍‌ମୋନେଲା ଟାଇଫଏଡ୍ ଭଳି ଜ୍ୱର ସୃଷ୍ଟି କରିଥାଏ । ଷ୍ଟାଫାଇଲୋକୋକସ୍ ଅରିୟସ୍ ଚର୍ମ ରୋଗକାରୀ ଅଣୁଜୀବ ଓ ନରମ ପେଶୀକୁ ଆକ୍ରାନ୍ତ କରିଥାଏ । ଏ ସମସ୍ତ ବୀଜାଣୁଙ୍କ କାର୍ଯ୍ୟକୁ ପ୍ରତିରୋଧ କରିବା ଗୁଣ ମାଣ୍ଡିଆର ରହିଥାଏ ।

୫- ମାଣ୍ଡିଆରେ କର୍କଟ ରୋଗ ପ୍ରତିରୋଧୀ ଗୁଣ ଥାଏ : ମାଣ୍ଡିଆରେ ପ୍ରଚୁର ଆଣ୍ଟିଅକ୍ସିଡ଼ାଣ୍ଟ୍ ରହିଥାଏ । ଆଣ୍ଟିଅକ୍ସିଡ଼ାଣ୍ଟ୍ ଅତ୍ୟଧିକ ଅକ୍ସିଡେସନ୍‌କୁ ଦୂର କରିଥାଏ । ନଚେତ୍ କୋଷ ନଷ୍ଟ ହେବା କାରଣରୁ କର୍କଟ ରୋଗ ହୋଇଥାଏ । ମାଣ୍ଡିଆ ଦାନାର ଚୋପାରେ ଥିବା ଫିନୋଲିକ୍ ଅମ୍ଳ, ଫ୍ଲାଭୋନଏଡ୍ ଓ ଟାନିନ୍‌ର ଆଣ୍ଟିଅକ୍ସିଡ଼ାଣ୍ଟ୍ ଗୁଣ ଥାଏ । ପୁଷ୍ଟିଶସ୍ୟଭିତ୍ତିକ ଖାଦ୍ୟ ଖାଇଲେ ଗହମ ଓ ମକା ଖାଦ୍ୟ ଅପେକ୍ଷା ଖାଦ୍ୟନଳୀ (ଇସୋଫେଜିଆଲ୍) କର୍କଟ ରୋଗ କମ୍ ହୋଇଥାଏ ।

୬- ମାଣ୍ଡିଆ ମଣିଷର ଯୁବାବସ୍ଥା ବଜାୟ ରଖେ : ଫେନୋଲିକ୍ ଓ ଆଣ୍ଟିଅକ୍ସିଡ଼ାଣ୍ଟ୍ ବ୍ୟତୀତ ମାଣ୍ଡିଆ ଓ କୋଦ କୋଲାଜେନ୍‌ର ପ୍ରତି ସଂଯୋଗକୁ ପ୍ରତିହତ କରିଥାଏ । କୋଲାଜେନ୍ ମାଂସପେଶୀକୁ ନମନୀୟତା ପ୍ରଦାନ

କରୁଥିବାବେଳେ ପ୍ରତି ସଂଯୋଗ ଗୁଣକୁ ହ୍ରାସ କରିଥାଏ । ଫଳରେ ମାଂସପେଶୀ କଠିନ ହୋଇଥାଏ ।

୭- ମାଣ୍ଡିଆ କ୍ଷତିକାରକ କୋଲେଷ୍ଟେରଲ କମାଇ ଥାଏ ଓ ହୃଦ୍‌ରୋଗକୁ ଦୂରୀଭୂତ କରେ : ସମ୍ପ୍ରତି ଗବେଷଣାରୁ ଜଣାଯାଇଛି ଯେ ମାଣ୍ଡିଆ ହୃଦ୍‌ରୋଗର ଆଶଙ୍କା କମାଇଥାଏ । ମାଣ୍ଡିଆ ସିରମ୍ ଟ୍ରାଇଗ୍ଲିସେରାଇଡ଼ର ସାନ୍ଦ୍ରତା ହ୍ରାସ କରିଥାଏ । ଏହା ଲିପିଡ୍ ଅକ୍ସିଡେସନ ଓ ଏଲ୍‌ଡିଏଲ୍ କୋଲେଷ୍ଟରଲ ଅକ୍ସିଡେସନ୍‌କୁ ପ୍ରତିହତ କରିଥାଏ । ଏହାକୁ କ୍ଷତିକାରକ କୋଲେଷ୍ଟରଲ କୁହାଯାଇଥାଏ । ଅକ୍ସିଡାଇଜ୍‌ଡ୍ ହୋଇଗଲେ ଏହା ଅସୁବିଧା ସୃଷ୍ଟି କରେ ଓ ହୃଦ୍‌ଘାତର ଆଶଙ୍କା ସୃଷ୍ଟି କରେ ।

### ଅନ୍ୟ ପୁଷ୍ଟି ଶସ୍ୟର ସ୍ୱାସ୍ଥ୍ୟଗତ ଉପାଦେୟତା

ପୁଷ୍ଟିଶସ୍ୟଗୁଡ଼ିକରେ ଯଥେଷ୍ଟ ନିଆସିନ୍ ରହିଛି । ଏହା ସୁସ୍ଥ ଚର୍ମ ଓ ଶରୀର ବିଭିନ୍ନ କାର୍ଯ୍ୟ ପାଇଁ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏଥିରେ ବିଶେଷତଃ ଗାଢ଼ ରଙ୍ଗର ଶସ୍ୟରେ ବିଟା କ୍ୟାରୋଟିନ୍ ଥାଏ । ଏହା ଭିଟାମିନ୍ 'କ'କୁ ରୂପାନ୍ତରିତ ହୁଏ, ଫ୍ରି-ରେଡିକାଲ ସହିତ ସଂଗ୍ରାମ କରିବାକୁ ଶରୀରକୁ ସାହାଯ୍ୟ କରେ ଓ ପ୍ରତିରକ୍ଷା ପଦ୍ଧତିକୁ ସହାୟତା ପ୍ରଦାନ କରେ । ମିଲେଟ୍ ପୁଷ୍ଟିସାର, ତନ୍ତୁ, ମୁଖ୍ୟ ଭିଟାମିନ୍ ଓ ଧାତବ ଲବଣର ଏକ ଉତ୍ତମ ଉତ୍ସ । ଏହା ଶରୀରର କାର୍ଡ଼ିଓଭାସ୍‌କୁଲାର ସ୍ୱାସ୍ଥ୍ୟ ସୁରକ୍ଷା ପ୍ରଦାନ କରେ । ମଧୁମେହ ରୋଗକୁ ପ୍ରତିହତ କରି ଆବଶ୍ୟକୀୟ ଶରୀର ଓଜନ ରକ୍ଷା କରେ ଓ ଗଟ୍ ଇନ୍‌ଫ୍ଲେମେସନ୍ କରାଇ ନଥାଏ । ଏହା ଶରୀର ଓଜନ, ଉଚ୍ଚ ରକ୍ତଚାପ,ବଡିମାସ୍ ଇଣ୍ଡେକ୍ସ (ବି.ଏମ୍.ଆଇ) କମାଇଥାଏ । ଆମ ରାଜ୍ୟ ଓ ଦେଶରେ ଡାଲି ସହିତ ମିଲେଟ୍ ଖିଆ ଯାଉଥିବାରୁ ପାରସ୍ପରିକ ପରିପୂରକ କାର୍ଯ୍ୟ ସମ୍ପାଦିତ ହୋଇଥାଏ । ଏହା ଆମିନୋଏସିଡ୍ ପରିମାଣ ବୃଦ୍ଧି କରେ ଓ ପୁଷ୍ଟିସାର ହଜମ ପ୍ରକ୍ରିୟାକୁ ବୃଦ୍ଧି କରିଥାଏ । ଶରୀରର ଶର୍କରା ଓ କୋଲେଷ୍ଟେରଲ୍ ହ୍ରାସ କରିଥାଏ । ଯେଉଁ ଲୋକମାନେ ସେମାନଙ୍କ ଖାଦ୍ୟରେ ଗ୍ଲୁଟେନକୁ ସହ୍ୟ କରିପାରନ୍ତି ନାହିଁ ସେମାନେ ମିଲେଟ୍ ଖାଦ୍ୟ ଖାଇପାରିବେ, କାରଣ ଏହା ହେଉଛି ଏକ ଗ୍ଲୁଟେନ୍ ନଥିବା ଖାଦ୍ୟ । ମିଲେଟ୍‌ରେ ମାଗ୍ନେସିୟମ୍ ରହିଥିବାରୁ କାର୍ଡ଼ିଓଭାସ୍‌କୁଲାର ପ୍ରଣାଳୀକୁ ଏହା ସୁସ୍ଥ ରଖେ । ଜଣେ ବ୍ୟକ୍ତି ମିଲେଟ୍ ଖାଦ୍ୟ ଖାଇଲେ ଏହା ପ୍ରୋଟିନ୍ ଏଡିପୋନେକ୍ଟିନ୍ ଉନ୍ନତ ରହେ ଓ ଏହା କାର୍ଡ଼ିଓଭାସ୍‌କୁଲାର ମାଂସପେଶୀକୁ ସୁରକ୍ଷିତ କରିଥାଏ । ମିଲେଟ୍‌ରେ ଆମିନୋ ଏସିଡ୍, ଟ୍ରିପ୍‌ଟୋଫେନ ଅଧିକ ସାନ୍ଦ୍ରତାରେ ରହିଥିବାରୁ ମନର ଅବସ୍ଥା ଭଲ ରହେ । ମାନସିକ ଅବସାଦ ରୋଗୀ ସେମାନଙ୍କ ଖାଦ୍ୟରେ ଦୈନିକ ମିଲେଟ୍ ଖାଇବା ଆବଶ୍ୟକ । ପ୍ରତି ୧୦୦ ଗ୍ରାମ୍ ରନ୍ଧା ହୋଇନଥିବା ମିଲେଟ୍‌ରେ ୩୭୮ କ୍ୟାଲୋରୀ ଶକ୍ତି ଥାଏ । ସମସ୍ତ ମିଲେଟ୍‌ରେ ଯଥେଷ୍ଟ ପରିମାଣରେ ଶ୍ୱେତସାର ରହିଛି । ତେଣୁ ମିଲେଟ୍ ଖାଇବା ପରେ ଜଣେ ବ୍ୟକ୍ତି ଦୀର୍ଘ ସମୟ ପାଇଁ ନିଜକୁ ଶକ୍ତିଯୁକ୍ତ ଅନୁଭବ କରିଥାଏ । ମିଲେଟ୍‌ରେ ବହୁ ପ୍ରକାର ଅତ୍ୟାବଶ୍ୟକ ଖାଦ୍ୟସାର ରହିଛି । ଏଥିପାଇଁ ମିଲେଟ୍ ବା ପୁଷ୍ଟିଶସ୍ୟକୁ ଏକ ସ୍ମାର୍ଟ୍ ଖାଦ୍ୟ ଭାବେ ଅଭିହିତ କରାଯାଏ ।

କୃଷି ଜିଲ୍ଲା ଅଧିକାରୀ
ଯାଜପୁର ରୋଡ଼୍, ଯାଜପୁର

❖ ❖ ❖

# ଜଳବାୟୁ ଓ ସ୍ୱାସ୍ଥ୍ୟ ଉପଯୋଗୀ ପୁଷ୍ଟିଶସ୍ୟ

ଡ. ପରେଶ କୁମାର ପଣ୍ଡା

ଅନ୍ତର୍ଜାତୀୟ ମିଲେଟ୍ ବର୍ଷ-୨୦୨୩ ପାଳନ ଅବସରରେ ଜଳବାୟୁ ଓ ସ୍ୱାସ୍ଥ୍ୟ ଉପଯୋଗୀ ପୁଷ୍ଟିଶସ୍ୟ (ମିଲେଟ୍)ର ଗୁରୁତ୍ୱପୂର୍ଣ୍ଣ ଭୂମିକା ପ୍ରତିପାଦିତ ହୋଇଛି । ରାଜ୍ୟ ଓ ଦେଶରେ ପୁଷ୍ଟିଶସ୍ୟର ବହୁଳ ଲୋକପ୍ରିୟତା ନିମନ୍ତେ ଆମ ରାଜ୍ୟ ସରକାର ନଭେମ୍ବର ୧୦ ତାରିଖକୁ 'ମାଣ୍ଡିଆ ଦିବସ' ରୂପେ ପାଳନ କରିବାକୁ ଘୋଷଣା କରିଛନ୍ତି । 'ଓଡ଼ିଶା ମିଲେଟ୍ସ ମିଶନ' ପରି ଏକ ଦୃଢ଼ କାର୍ଯ୍ୟକ୍ରମ ଚାଲୁ ରଖିଛନ୍ତି ।



ପରିବର୍ତ୍ତିତ ଜଳବାୟୁ ଆଜିର ଚିନ୍ତାର ମୁଖ୍ୟ କାରଣ । ଦିନକୁ ଦିନ ଖାଉଟିମାନଙ୍କର ପୁଷ୍ଟିକର ଖାଦ୍ୟ ସଚେତନତା ବୃଦ୍ଧି ପାଇବାରେ ଲାଗିଛି । କାଲି ଯେଉଁ ଖାଦ୍ୟକୁ ଗରିବ ଲୋକ ଖାଉଥିଲେ, ତାହାକୁ ଆଜି ଧନୀ ଲୋକର ଖାଦ୍ୟ ରୂପେ ବିବେଚନା କରାଯାଉଛି । ତା'ଛଡ଼ା ବର୍ଷସାରା ଫସଲ ଚାଷ ସହ କୃଷକଙ୍କ ଆୟରେ ବୃଦ୍ଧି ଘଟାଇବା ଲକ୍ଷ୍ୟ ରହିଛି । ଶୁଷ୍କାଞ୍ଚଳ ଓ ବୃଷ୍ଟିପୁଷ୍ଟ ଅଞ୍ଚଳଗୁଡ଼ିକରେ କମ୍ ପାଣିରେ କମ୍ ଦିନରେ ଚାଷ ହେଉଥିବା ଫସଲ ପ୍ରତି ପ୍ରାଧାନ୍ୟ ଦିଆଯାଉଛି । ତେଣୁ, ପୁଷ୍ଟିଶସ୍ୟ ବା ଲଘୁଶସ୍ୟ ବା ଗୌଣଶସ୍ୟ କିମ୍ବା କ୍ଷୁଦ୍ରଶସ୍ୟର ଚାଷ ଓ ବ୍ୟବହାରର ଗୁରୁତ୍ୱ ବୃଦ୍ଧି ପାଇଛି ।

ଏହି ପୁଷ୍ଟିଶସ୍ୟ ମଧ୍ୟରେ ମାଣ୍ଡିଆ ପ୍ରମୁଖ ଅଟେ । ଏତଦ୍‌ବ୍ୟତୀତ ଯଅ, ବାଜରା, ମାଣ୍ଡିଆ ସୁଆଁ / ଖିରା, ଚିନା, କୋଦ, କାଙ୍ଗୁ, ଗୁଲ୍‌ଜି / କୋଶଳା / ସମାଇ ରହିଛି । ଏସବୁ ଖାଦ୍ୟଶସ୍ୟ ବେଶ୍ ପୁଷ୍ଟିକର ଓ ସହଜରେ ପାଚନଶୀଳ । ଏଥିରେ ଧାନ ଓ ଗହମ ତୁଳନାରେ ପ୍ରଚୁର ପରିମାଣରେ ଆହାରଯୋଗ୍ୟ ଜୀବସାର, ଖଣିଜସାର ଯଥା: କାଲସିୟମ୍, ମାଗ୍ନେସିୟମ୍, ଫସ୍‌ଫରସ୍, ପଟାସ, ଲୌହସାର ସହ ପୁଷ୍ଟିସାର, ଶ୍ୱେତସାର, ସ୍ନେହସାର ଓ ତନ୍ତୁ ରହିଥାଏ । ସାଧାରଣତଃ ଚାଉଳରେ ୬.୮ ରୁ ୮.୫ ପ୍ରତିଶତ ଓ ଗହମ ଅଟାରେ ୧୧.୮ ପ୍ରତିଶତ ପୁଷ୍ଟିସାର ଥିବାବେଳେ ମାଣ୍ଡିଆରେ ୭.୩ରୁ ୧୧.୯, କାଙ୍ଗୁରେ ୧୨.୩, ଚିନାରେ ୧୨.୫, କୋଦରେ ୮.୩, ସୁଆଁରେ ୭.୭, ଯଅରେ ୧୦.୪ ଓ ବାଜରାରେ ୧୦.୬ ପ୍ରତିଶତ ପୁଷ୍ଟିସାର ରହିଥାଏ । ପୁଷ୍ଟିଶସ୍ୟ ମଧ୍ୟରେ ମାଣ୍ଡିଆ ଅଧିକ ପୁଷ୍ଟିକାରୀ ଓ ଉପାଦେୟ ।

ସାଧାରଣତଃ ପୁଷ୍ଟିଶସ୍ୟ ଗ୍ଲୁଟେନ୍ ମୁକ୍ତ ଓ ଆଣ୍ଟିଅକ୍ସିଡାଣ୍ଟଯୁକ୍ତ ହୋଇଥିବାରୁ ମଧୁମେହ ରୋଗ ନିୟନ୍ତ୍ରିତ ହେବା ସହ କର୍କଟ ରୋଗର ଆଶଙ୍କା ରହି ନଥାଏ । ଏହା ମଧୁମେହ ରୋଗୀର ଉପାଦେୟ ଖାଦ୍ୟ ଓ ନିୟମିତ ଖାଇବା ଦ୍ୱାରା ଶରୀରରୁ ଅଧିକ ପରିମାଣରେ ଇନ୍‌ସୁଲିନ୍ ଝରିଥାଏ । ମାଣ୍ଡିଆର ଔଷଧୀୟ ଗୁଣଗୁଡ଼ିକ ହେଲା- ହାଡ଼କୁ ମଜବୁତ୍ କରିବା, ମେଦ ବହୁଳତା ହ୍ରାସ, ରକ୍ତହୀନତା

ଦୂର, ଚର୍ମଚିକ୍କଣ, ଶରୀରକୁ ସତେଜ ଓ ସୁସ୍ଥ ରଖିବା । ଏତଦ୍‌ବ୍ୟତୀତ ହୃଦ୍‌ରୋଗ ଆଶଙ୍କା ହ୍ରାସ, ବୃକ୍କ ଓ ଯକୃତର ପ୍ରତିରୋଧକ ଶକ୍ତି ବୃଦ୍ଧି, ରକ୍ତଚାପ ହ୍ରାସ, କୋଲେଷ୍ଟରଲ୍ ହ୍ରାସ ଓ ହଜମଶକ୍ତିରେ ବୃଦ୍ଧି ଘଟାଇଥାଏ । ମାଣ୍ଡିଆକୁ ଗାଈ କ୍ଷୀରର ବିକଳ୍ପ କୁହାଯାଏ ଏବଂ ଏଥିରେ କ୍ଷୀରଠାରୁ ୩ ଗୁଣ ଅଧିକ କ୍ୟାଲସିୟମ୍ ରହିଥାଏ । କୋଦ ଶସ୍ୟରେ ଗହମ ଓ ମକା ତୁଳନାରେ ୩ ଗୁଣ ଏବଂ ଧାନ ତୁଳନାରେ ୧୦ ଗୁଣ ଅଧିକ ତନ୍ତୁ ରହିଥାଏ । ଏଥିରେ ଅଧିକ ସ୍ନେହସାର, ଖଣିଜଲବଣ, ଆବଶ୍ୟକୀୟ ଆମିନୋ ଏସିଡ୍ ଜୀବନିକା ଓ ତନ୍ତୁ ରହିଥାଏ ।

ବିସ୍କୁଟ୍ ପ୍ରସ୍ତୁତକାରୀ ଉଦ୍ୟୋଗଗୁଡ଼ିକ ମାଣ୍ଡିଆଜାତୀୟ ଶସ୍ୟରୁ ବିଭିନ୍ନ ପ୍ରକାରର ବିସ୍କୁଟ୍ ଓ ସ୍ନାକ୍ସ ପ୍ରସ୍ତୁତ କରି ବଜାରକୁ ଛାଡ଼ିଛନ୍ତି ଏବଂ ସେଗୁଡ଼ିକ ଖାଉଟିମାନଙ୍କ ଦ୍ୱାରା ଆଦୃତ ହୋଇପାରିଛି । ମାଣ୍ଡିଆ, କାଙ୍ଗୁ, ସୁଆଁ ଆଦିର ଚୂନାକୁ ଅଟା, ବିରି ବା ବେସନ ପରି ଖାଦ୍ୟ ସହ ମିଶାଇ ବିଭିନ୍ନ ସ୍ୱାଦିଷ୍ଟ ଖାଦ୍ୟ ପ୍ରସ୍ତୁତ କରାଯାଏ । ମାଣ୍ଡିଆଜାତୀୟ ଶସ୍ୟରୁ ଇଡ୍‌ଲି, ପକୋଡ଼ି, ଉପମା, ଲଡୁ, ହାଲୁଆ, ରୁଟି, ସୁପ୍, ରାଗୀଭିଟା, ଆରିଶା ପିଠା, ମିକ୍ସଚର, ଦୋସା, ବରା, ମୁଡ଼କି, ଖେଚୁଡ଼ି, ଚକୋଲେଟ୍, କ୍ଷୀରି, କଟ୍‌ଲେଟ୍, ଖିରା, ପୁରୀ, ଛତୁଆ, ଚକୁଳି, ବିରିୟାନି, ପରଟା ଆଦି ଅନେକ ସ୍ୱାଦିଷ୍ଟ ବ୍ୟଞ୍ଜନ ପ୍ରସ୍ତୁତ ହୋଇଥାଏ ।

ଏହିସବୁ ପୁଷ୍ଟିଶସ୍ୟର ଉତ୍ପାଦନ ଓ ବ୍ୟବହାର ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଉଛି । କାରଣଗୁଡ଼ିକ ହେଲା- ପୁରାତନ କାଳରୁ ଏହାର ଚାଷ ହୋଇଆସୁଛି । ପରିବର୍ତ୍ତିତ ଜଳବାୟୁ ଓ ବିଭିନ୍ନ ଫସଲ ପର୍ଯ୍ୟାୟରେ ଏହା ଉତ୍ତମ ରୂପେ ଖାପ ଖାଏ ଓ ଶୁଷ୍କ ତଥା ଅଧିକ ଉତ୍ତାପଯୁକ୍ତ ଜଳବାୟୁରେ ସହଜରେ ଚାଷ ହୋଇଥାଏ । ଏହା ବିଭିନ୍ନ ପ୍ରକାର ପ୍ରାକୃତିକ ଦୁର୍ବିପାକ, ଜୈବ ଓ ଅଜୈବିକ ଚାପ ସହଣୀଯୁକ୍ତ ଫସଲ । ସ୍ଥାନୀୟ ଅଞ୍ଚଳରେ ଖାଦ୍ୟ ଓ ପୋଷକ ନିରାପତ୍ତା ଲକ୍ଷ୍ୟ ହାସଲରେ ସହାୟକ ହୋଇଥାଏ । ନାମମାତ୍ର ଉର୍ବର ବା ସାଧାରଣ ଜମିରେ ଏହା ଚାଷ ହୋଇପାରେ । ସ୍ୱଳ୍ପ ଅବଧିର ଓ ସ୍ୱଳ୍ପ ଖର୍ଚ୍ଚର ଫସଲ ହୋଇଥିବାରୁ କ୍ଷୁଦ୍ର ଓ ନାମମାତ୍ର ଚାଷୀମାନେ ଏହାକୁ ଚାଷ କରିବାକୁ ଭଲ ପାଆନ୍ତି ।

ଏସବୁ ଦୃଷ୍ଟିକୋଣରୁ ରାଜ୍ୟ କୃଷି ବିଭାଗ ସବୁ ଜିଲ୍ଲାରେ ଓଡ଼ିଶା ମିଲେଟ୍ ମିଶନ ଯୋଜନାକୁ ସମ୍ପ୍ରସାରଣ କରି ଲୋକପ୍ରିୟ ସହାୟତା କାର୍ଯ୍ୟକ୍ରମ ପ୍ରଚଳନ କରିଛି । ବିଶେଷ କରି ମରୁଡ଼ିପ୍ରବଣ, ଶୁଷ୍କାଞ୍ଚଳ ଓ ବୃଷ୍ଟିପୁଷ୍ଟ ଅଞ୍ଚଳଗୁଡ଼ିକରେ ଧାନ ବଦଳରେ ଜଳବାୟୁ ଉପଯୋଗୀ ପୁଷ୍ଟିଶସ୍ୟର ଚାଷ, ଅମଳ ପରବର୍ତ୍ତୀ ପରିଚାଳନା, ମହଜୁଦ୍‌କରଣ, ପ୍ରକ୍ରିୟାକରଣ ଏବଂ ମୂଲ୍ୟଯୋଗକରଣ ଓ ବିକ୍ରିବଟାଜନିତ ସହାୟକ ଯନ୍ତ୍ରପାତି ଓ ଚାଷ କୌଶଳ ମାଧ୍ୟମରେ ଅଧିକରୁ ଅଧିକ ଆୟ ବୃଦ୍ଧି ଘଟାଇବାର ଲକ୍ଷ୍ୟ ରଖାଯାଇଛି । ଅଧିକ ଅମଳକ୍ଷମ, ଉନ୍ନତ ପ୍ରମାଣିତ ବିହନ ଯଥା ସମୟରେ ଉପଲବ୍ଧ ହେବାର ବ୍ୟବସ୍ଥା କରାଯାଇଛି । ମାଣ୍ଡିଆ କିସମ ମଧ୍ୟରେ ଭୈରବୀ, କାଳୁଆ, ଭି.ଏଲ୍. ମାଣ୍ଡୁଆ-୩୭୯, ଚିଲିକା (ଓ.ଇ.ବି-୧୦), ଅର୍ଜୁନ (ଓ.ଇ.ବି.-୫୨୬), ଦିବ୍ୟ (ଏମ୍.ଆର.-୬), ଭି.ଏଲ୍. ମାଣ୍ଡିଆ-୩୫୨, ଭି.ଏଲ୍.-୩୭୬, କେ.ଏମ୍.ଆର୍.-୨୦୪, କେ.ଏମ୍.ଆର୍.-୩୦୧ (ଗୌରୀ) ଅନ୍ୟତମ । ଏସବୁ କିସମର ଅମଳ ଅବଧି ୩ ରୁ ୪ ମାସ ।

ମାଣ୍ଡିଆ ଚାଷ ବର୍ଷସାରା କରାଯାଇପାରିବ । ଏହାକୁ ଧାନ ବା ଅନ୍ୟ ଅଣଧାନ ଫସଲ ସହ ଅନ୍ତଃଫସଲ ବା ମିଶ୍ରିତ ଫସଲ ଭାବେ ଚାଷ କରାଯାଏ । ସବୁ ପ୍ରକାର ମୃତ୍ତିକାରେ ଏହା ଚାଷ କରାଯାଉଥିଲେ ମଧ୍ୟ ନିଗିଡ଼ା ଦୋରସା ମାଟିରେ ଏହାର ଚାଷ ଭଲ ଓ ଅମଳ ଅଧିକ ହୋଇଥାଏ । ଏକର ପ୍ରତି ୨.୫ ରୁ ୫ କି.ଗ୍ରା. ମାଣ୍ଡିଆ ବିହନ ଦରକାର ପଡ଼ିଥାଏ । ବିହନ ବିଶୋଧନ ପରେ ଧାଡ଼ିକୁ ଧାଡ଼ି ୨୦-୨୫ ସେ.ମି. ଦୂରତାରେ ବୁଣାଯାଏ । ମାଣ୍ଡିଆକୁ ରୋଇଲେ ଅଧିକ ଅମଳ ମିଳିଥାଏ । ଏକର ପ୍ରତି ବୃଷ୍ଟିପୁଷ୍ଟ ଫସଲରେ ୧୬:୮:୮ (ଅର୍ଥାତ୍ ଡି.ଏ.ପି. ୧୭.୪ କି.ଗ୍ରା., ୟୁରିଆ ୨୮ କି.ଗ୍ରା. ଓ ପଟାସ୍ ବା ଏମ୍.ଓ.ପି. ସାର ୧୩.୩ କି.ଗ୍ରା. ଓ ଜଳସେଚିତ ଫସଲରେ ୨୪:୧୨:୧୨ (ଅର୍ଥାତ୍ ଡି.ଏ.ପି. ୨୬ କି.ଗ୍ରା., ୟୁରିଆ

୪୨ କି.ଗ୍ରା. ଓ ପଟାସ୍ ବା ଏମ୍.ଓ.ପି. ସାର ୨୦ କି.ଗ୍ରା.) ଯବକ୍ଷାରଜାନ : ଫସ୍‌ଫରସ୍ : ପଟାସ୍ ଦରକାର ପଡ଼ିଥାଏ ।

ମାଣ୍ଡିଆ ଲଗାଇବାର ବା ବୁଣିବାର ୨ ରୁ ୩ ସପ୍ତାହ ବେଳକୁ ପ୍ରଥମ ଘାସ ବଛା କରି ତାହାର ୨ ସପ୍ତାହ ବେଳକୁ ଆଉ ଥରେ କୋଡ଼ାଖୁସା କରାଯାଏ । ନଚେତ୍ ଘାସ ନିୟନ୍ତ୍ରଣ ପାଇଁ ବିହନ ବୁଣିବାର ୨ ଦିନ ମଧ୍ୟରେ ଅକ୍ସିଫ୍ଲୁରୋଫେନ୍ ୨୩.୫% ଇ.ସି. ୮୦ମି.ଲି. କିମ୍ବା ପେଣ୍ଡିମେଥାଲିନ୍ ୩୦% ଇ.ସି. ୧୦୦୦ମି.ଲି. ତୃଣନାଶକକୁ ୨୦୦ ଲିଟର ପାଣିରେ ମିଶାଇ ଏକର ପ୍ରତି ପ୍ରସ୍ତୁତ ଦ୍ରବଣକୁ ଓଦା ଥିବା ମାଟି ଉପରେ ସିଞ୍ଚନ କରାଯାଏ । ପିଲ ମାରିବା ଓ କ୍ଷୀର ଢୋକିବା ଅବସ୍ଥା ହେଉଛି ଫସଲର ସଙ୍କଟ କାଳ । ସେ ସମୟରେ ଜଳାଭାବ ଦେଖି ହାଲୁକା ଜଳସେଚନ ଦେବା ଜରୁରୀ । ମାଣ୍ଡିଆ ଫସଲରେ ଚାରା ସଢ଼ା, ମହିଷା, ପାଉଁଶିଆ ଆଦି ରୋଗ ଦେଖାଯାଏ । ସେଥିଲାଗି ଜୈବ ରୋଗନାଶକ-ସୁଡୋମୋନାସ୍‌ର ୧୦୦ ଗ୍ରାମ୍/ କାର୍ବେଣ୍ଡାଜିମ୍ ୩୦୦ ଗ୍ରାମ୍ / ଥାୟୋଫେନେଟ୍ ମିଥାଇଲ୍ ବା ମାନ୍‌କୋଜେବ୍ ୫୦୦ ଗ୍ରାମ୍ / ଟ୍ରାଇସାଇକ୍ଲାଜୋଲ୍ ୧୨୦ ଗ୍ରାମ୍ ଏକର ପ୍ରତି ୨୦୦ ଲିଟର ପାଣିରେ ମିଶାଇ ଉପରବେଳା ଫସଲରେ ସିଞ୍ଚନ କରାଯାଏ ।

ପୋକ ମଧ୍ୟରେ ଜଉ, କାଣ୍ଡବିନ୍ଧା, କର୍ତ୍ତକ କୀଟ, ସଂବାଳୁଆ, ଝିକା, ଉଇ ଓ ଦିଆଲୀ ପୋକ ଅନ୍ୟତମ । ପୋକ ନିୟନ୍ତ୍ରଣ ନିମନ୍ତେ କ୍ଲୋର୍‌ପାଇରିଫସ୍ ୨୦% ଇ.ସି./ ଫିପ୍ରୋନିଲ୍ ୫% ଏସ୍.ସି.ର ୪୦୦ ମି.ଲି. କିମ୍ବା ଥାୟାମେଥୋକ୍ସାମ୍ ୨୫% ଡବ୍ଲ୍ୟୁ.ପି. ୪୦ ଗ୍ରାମ୍‌କୁ ଏକର ପ୍ରତି ୨୦୦ ଲିଟର ପାଣିରେ ମିଶାଇ ଫସଲରେ ସିଞ୍ଚନ କରାଯାଏ । ଆବଶ୍ୟକ ସ୍ଥଳେ ୭-୧୦ ଦିନ ଅନ୍ତରରେ ଦ୍ୱିତୀୟ ଥର କୀଟନାଶକର ସିଞ୍ଚନ ଆବଶ୍ୟକ ହୋଇପାରେ ।

ସବୁ ମାଣ୍ଡିଆ ଥୋପା ଏକା ସମୟରେ ନ ପାଚି ମା' ଗଛର ଥୋପା ପ୍ରଥମେ ପାଚିଥାଏ । ଥୋପାଗୁଡ଼ିକ ଈଷତ୍ ଲାଲ୍ କିମ୍ବା ହଳଦିଆ ରଙ୍ଗର ଦେଖାଗଲେ ତାହାକୁ କାଟି ନିଆଯାଏ । ଥୋପାଗୁଡ଼ିକୁ କାଟି ନେଇ ଜମିରେ ନ ରଖି ଖଳାରେ ଗଦା କରି ୩-୪ ଦିନ ଖରାରେ ଶୁଖାଯାଏ । ତାହା ପରେ ବେଙ୍ଗଳା ପକାଇ ଅମଳ କରାଯାଏ । ଭଲ ଫସଲରୁ ହାରାହାରି ଏକର ପ୍ରତି ୮-୧୨ କ୍ୱିଣ୍ଟାଲ୍ ମାଣ୍ଡିଆ ଅମଳ ମିଳିଥାଏ ।

ଏ ସବୁ ସାମଗ୍ରିକ ଆଲୋଚନାରୁ ଜଣାଯାଇଛି ଯେ ପରିବର୍ତ୍ତିତ ଜଳବାୟୁ ସହ ତାଳଦେଇ ଖାଦ୍ୟ ଓ ପୋଷକ ନିରାପତ୍ତା ଯୋଗାଇବା ଦିଗରେ ମାଣ୍ଡିଆ ଓ ଅନ୍ୟ ପୁଷ୍ଟିଶସ୍ୟର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ତେଣୁ, ପୁଷ୍ଟିଶସ୍ୟର ଅଧିକରୁ ଅଧିକ ଉତ୍ପାଦନ ଦିଗରେ ଉଭୟ ସରକାରୀ ଓ ବେସରକାରୀ ସ୍ତରରେ ପ୍ରୟାସ ଜାରି ରହିଲେ କୃଷି ପରିବାରର ସ୍ୱାସ୍ଥ୍ୟ ନିରାପତ୍ତା ସହିତ ଆର୍ଥିକ ସ୍ୱାବଲମ୍ବନଶୀଳତା ଓ ଆୟ ବୃଦ୍ଧି ହେବ, ଏଥିରେ ଦ୍ୱିରୁକ୍ତି ନାହିଁ ।

ସହକାରୀ କୃଷି ନିର୍ଦ୍ଦେଶକ, ଯାଜପୁର

❖ ❖ ❖

# ଚାଷ ଜମିରେ ମହକ ଆଣୁଛି ମାଣ୍ଡିଆ

ଡି. ଶୁଭମ୍

''ଆମ ଚାଷ ଜମି ଆମ ସମ୍ପଦ, ଗଢ଼ିବା ରାଜ୍ୟରେ ବିଶ୍ୱ ବୈଭବ'' । ଏ ଉକ୍ତିଟିକୁ ଆଜି କେବଳ ଚାଷୀ ନୁହଁ ବରଂ ସମାଜର ସବୁ ଶ୍ରେଣୀର ଲୋକ ବୁଝିସାରିଛନ୍ତି । ଏଠାରେ ଗୋଟିଏ କଥା କହିବାକୁ ଚାହିଁବି ଆପଣମାନେ ସମସ୍ତେ ଜାଣିଥିବେ ଚାଷୀ ଆଉ ଚାଷ ଭିତରର ସମ୍ପର୍କ କଣ । ଏହାକୁ ଭାଷାରେ ବର୍ଣ୍ଣନା କରିହେବ ନାହିଁ । କାରଣ ଯିଏ ଅନବରତ ମାଟି ସହ ମାଟି ହୋଇ ଆମକୁ ଅନ୍ନ ଯୋଗାଏ ତା' ପାଇଁ ଶବ୍ଦ ଅଭାବ ପଡ଼ିବା ନିଶ୍ଚିତ । ସେଥିପାଇଁ ସେ ମୁକୁଟବିହୀନ ସମ୍ରାଟ । କେବେ କୌଣସି ସ୍ଥାନରେ ଆପଣ ଦେଖିବାକୁ ପାଇବେନି ଯେ ଚାଷୀଟିଏ କିଛି ବଡ଼ ଜିନିଷ କି ଉପହାରକୁ ଆଶା କରୁଛି । ମୋହ ମାୟାଠାରୁ ଉର୍ଦ୍ଧ୍ୱରେ ରହି ଚାଷୀ ନିଜର କର୍ମ ସମ୍ପାଦନ କରେ । ଆମ ରାଜ୍ୟରେ ଚାଷୀମାନେ କୁଶଳୀ ଆଉ ଅଭିଜ୍ଞ । ଏକ କୃଷିପ୍ରଧାନ ରାଜ୍ୟ ଭାବେ ଓଡ଼ିଶାରେ ବିଭିନ୍ନ ଫସଲ ଚାଷ କରାଯାଉଥିଲେ ହେଁ ବର୍ତ୍ତମାନ ମାଣ୍ଡିଆ ସବୁଆଡ଼େ ଏକ ଭିନ୍ନ ଧରଣର ଚହଳ ପକାଇଛି । ଆପଣ ଯେଉଁଆଡ଼େ ଯିବେ ଏବେ ମାଣ୍ଡିଆର ମହକ । ମାଣ୍ଡିଆକୁ ନେଇ ଏବେ ଲୋକଙ୍କର ଧାରଣା ବଦଳିବାରେ ଲାଗିଛି । ଏହା ଆଉ ଗରିବଙ୍କ ଖାଦ୍ୟ ହୋଇ ନାହିଁ ବରଂ ସମାଜର ସବୁଶ୍ରେଣୀର ଲୋକ ଏବେ ମାଣ୍ଡିଆ ପାଇଁ ବ୍ୟଗ୍ର । ସମସ୍ତଙ୍କ ମନରେ ଏକ ଅହେତୁକ ଆକର୍ଷଣ ଆଉ ନିଆରାପଣ ମାଣ୍ଡିଆ ପାଇଁ ।

ଏଇ କିଛି ଦିନ ତଳେ ଗଜପତି ଓ ରାୟଗଡ଼ା ଜିଲ୍ଲାର ବିଭିନ୍ନ ବ୍ଲକରେ ପରିଦର୍ଶନ କଲା ବେଳେ ମାଣ୍ଡିଆ ପ୍ରତି ଲୋକଙ୍କ ଭଲପାଇବାକୁ ଆଖିରେ ଦେଖିଥିଲି । ଆମେ ସହରର ଚାକଚକ୍ୟ ଭିତରେ ମାଣ୍ଡିଆ ପାଇଁ



ଯେତିକି ପାଗଳ ହେଉଛେ ସେମାନେ ପିଲାଟି ଦିନରୁ ଏବେ ଯାଏଁ ତା'ଠାରୁ ଅଧିକ ମୋହରେ ବନ୍ଧା । ସବୁଦିନ ଖାଦ୍ୟରେ ମାଣ୍ଡିଆକୁ ସାମିଲ କରିବା ସେମାନଙ୍କର ନିତିଦିନିଆ ଅଭ୍ୟାସ । ସେହି ସମୟରେ ଜଣେ ପ୍ରାପ୍ତ ବୟସ୍କ ଚାଷୀଙ୍କୁ ଭେଟିଥିଲି । ଖରାବେଳରେ ବି ଖରାକୁ ଖାତିର ନ କରି ସେ ଯେପରି ମାଣ୍ଡିଆର ପ୍ରଶଂସା କଲେ ଉପସ୍ଥିତ ଲୋକ ବି ଚକିତ ହେଲେ । ତାଙ୍କ ମୁହଁରୁ ଯେବେ ମାଣ୍ଡିଆର ଗୁଣବତ୍ତା ବିଷୟରେ ଶୁଣିଲି ନିଜେ ବି ଆଶ୍ଚର୍ଯ୍ୟ ହେଲି । କାରଣ ୭୦ ବର୍ଷ ବୟସରରେ ବି ସେ ମାଣ୍ଡିଆ ଚାଷ କରୁଛନ୍ତି । ସେ ଯେତିକି କାମ କରୁଛନ୍ତି ସାଧାରଣ ଯୁବକଟିଏ ଆଜିର ଦିନରେ ସେତିକି କାମ କରିପାରିବନି ।

ପାଖାପାଖି ୧.୫ ଏକରରୁ ଅଧିକ ଜମିରେ ସେ ମାଣ୍ଡିଆ ଚାଷ କରୁଛନ୍ତି । ସବୁଦିନ ଖାଦ୍ୟରେ ମାଣ୍ଡିଆ ଜାଉ ସାମିଲ କରୁଛନ୍ତି । ଏସବୁହିଁ ତାଙ୍କ ସୁସ୍ଥ ରହିବାର କାରଣ ବୋଲି ସେ ଯେବେ କହିଲେ ସେତେବେଳେ ତାଙ୍କ ଆଖି ଛଳଛଳ ହୋଇଯାଇଥିଲା । କାରଣ କଥା ଛଳରେ ସେ କହୁଥିଲେ- ଆଗରୁ ସିନା ଏସବୁ ଗରିବମାନଙ୍କର ଖାଦ୍ୟ ଥିଲା, ଏବେ କିନ୍ତୁ ଏଥିପାଇଁ ସରକାର ଅନେକଗୁଡ଼ିଏ ଯୋଜନା କଲେଣି । ସେହିଠାରୁ ହିଁ ଶୁଣିଲି ମିଲେଟ ମିଶନର ଗାଥା । ପାହାଡ଼ ପାଦଦେଶରୁ ବି ମହକ ଆଣୁଛି ମାଣ୍ଡିଆ । ମିଲେଟ ମିଶନର ସଫଳ କାହାଣୀ ସେ ଚାଷୀଙ୍କ ମୁହଁରୁ ଶୁଣି ଅନ୍ତତଃ ଏତିକି ବୁଝିଲି ଆମ ରାଜ୍ୟର ଚାଷୀ ସଶକ୍ତ ଆଉ ସମୃଦ୍ଧ । ଏକଥା କେବଳ ସ୍ଲୋଗାନରେ ସୀମିତ ନାହିଁ ବରଂ ଘରେ ଘରେ ଆଜି ମାଣ୍ଡିଆ ପହଞ୍ଚିସାରିଛି ।



ରାଜ୍ୟ ସରକାରଙ୍କ ମିଲେଟ ମିଶନ୍ ଏବେ ସଫଳତାର କଥା କହୁଛି । ମୟୂରଭଞ୍ଜରୁ ମାଲକାନାଗିରି ଯାଏଁ ସବୁଠି ଏବେ ମାଣ୍ଡିଆର ପ୍ରଚାର ଆଉ ପ୍ରସାର । ସାଧାରଣ ଲୋକଟିଏ ଏବେ କଥା ଛଳରେ କହୁଛି ''ଆରେ ଆଜି ସକାଳୁ କଣ ଜଳଖିଆ ହୋଇଛି, କଣ ମାଣ୍ଡିଆ ଜାଉ'ଟି ?'' ଏମିତିକି ଲୋକ ଏତେ ପରିମାଣରେ ପ୍ରଭାବିତ ହେଲେଣି ଯେ ସୋସିଆଲ ମିଡ଼ିଆରେ ବି ମାଣ୍ଡିଆର କଥା ସବୁବେଳେ ଶୁଣିବାକୁ ମିଳୁଛି । ଚଳିତ ନଭେମ୍ବର ୯-୧୦ରେ ଦୁଇ ଦିନିଆ ମିଲେଟ କନଫେରେନ୍ସ ଅନୁଷ୍ଠିତ ହେବ । କେବଳ ଚାଷୀ ନୁହେଁ କୃଷକ ଉତ୍ପାଦକ ସଂଗଠନ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ, ମିଶନ ଶକ୍ତିଠାରୁ ଆରମ୍ଭ କରି ବିଦ୍ୟାଳୟ, ମହାବିଦ୍ୟାଳୟ ତଥା ସବୁବର୍ଗର ଲୋକ ଏବେ ମାଣ୍ଡିଆ ଖାଉଛନ୍ତି, ଖୁଆଉଛନ୍ତି ଆଉ ଏହାର ସଫଳତାର ଗାଥାକୁ ଲୋକଙ୍କ ପାଖରେ ପହଞ୍ଚାଉଛନ୍ତି । ରାଜ୍ୟର ବଡ଼ ବଡ଼ ହୋଟେଲଗୁଡିକ ଖାଦ୍ୟ ତାଲିକାରେ ଏହାକୁ ସାମିଲ କଲେଣି ।

ବିଭିନ୍ନ ପ୍ରକାର ଗୁଣରେ ଭରପୂର ମାଣ୍ଡିଆ ଏବେ ଯୁବ ଉଦ୍ୟୋଗୀମାନଙ୍କ ବ୍ୟବସାୟରେ ସାମିଲ ହେଲାଣି । ଅନେକ ଆଜି ମିଲେଟରୁ ପ୍ରସ୍ତୁତ ବିଭିନ୍ନ ଖାଦ୍ୟ ସାମଗ୍ରୀକୁ କେବଳ ଓଡ଼ିଶା ନୁହେଁ ବରଂ ବାହାର ରାଜ୍ୟ ଓ ଦେଶ ବିଦେଶରେ ପହଞ୍ଚାଇପାରୁଛନ୍ତି । ଆଜି ଯେଉଁ ଦୋକାନ ଯିବେ ଚା' ସହ ମାଣ୍ଡିଆ କେକ୍‌ଟିଏ ହେଉ ଅବା ମାଣ୍ଡିଆ ଲଡୁ ମିଳୁଛି । ସବୁଠି ଆଜି ମାଣ୍ଡିଆର ଜୟଯାତ୍ରା । ମେଳା, ମହୋତ୍ସବଠାରୁ ଆରମ୍ଭ କରି ସବୁଠି ଏବେ ମାଣ୍ଡିଆର ଷ୍ଟଲ୍ ପ୍ରଦର୍ଶିତ ହେଉଛି । ରାଜ୍ୟ ସରକାର ଏ ଦିଗରେ ସ୍ୱତନ୍ତ୍ର ଧ୍ୟାନ ଦେଉଛନ୍ତି । ଫାର୍ମରୁ ପ୍ଲେଟ ଯାଏଁ ମାଣ୍ଡିଆ ଆଜି ସଫଳତାର ଗୀତ ଗାଉଛି । ଶୁଷ୍କ ମାଟିର ସୁନା, ମାଣ୍ଡିଆକୁ ଚାଷ କରିବା ପାଇଁ ଚାଷୀ ଏବେ ବେଶ୍ ଆଗଭର । 'ଓଡ଼ିଶା ମିଲେଟ ମିଶନ' ଏବେ ଏକ ବିପ୍ଳବରେ ପରିଣତ ହେଲାଣି । ମିଶନ ଶକ୍ତି, କୃଷି ବିଭାଗ, ମହିଳା ଓ ଶିଶୁ ବିକାଶ ପରି ବିଭିନ୍ନ ବିଭାଗମାନେ ଏବେ ଏହି ସଫଳତାରେ ଯୋଡ଼ି ହୋଇଛନ୍ତି । 'ଓଡ଼ିଶା ମିଲେଟ ମିଶନ' ଜୈବିକ କୃଷିକୁ ପ୍ରାଧାନ୍ୟ ଦେଇ ଚାଷ କରିବା ସହ ଚାଷ ଜମିର ଗୁଣବତ୍ତା ବୃଦ୍ଧି ଉପରେ ଗୁରୁତ୍ୱ ଦେଇ ଆସୁଛି ।

ଚାଷୀମାନଙ୍କୁ ଏ ଦିଗରେ ତାଲିମ ମିଳିବା ସହ ମିଲେଟ ମିଶନ ଜରିଆରେ ଅନେକ ଉପଯୋଗୀ ପନ୍ଥା ଆପଣାଯାଉଛି । କେବଳ ସେତିକି ନୁହେଁ ରାଜ୍ୟ ସରକାରଙ୍କ ତରଫରୁ ମାଣ୍ଡିଆର ଭୂ-ପ୍ରଜାତି ଜାରି

କରିବାରେ ଦେଶର ପ୍ରଥମ ରାଜ୍ୟ ଓଡ଼ିଶା । ୧୬୩ଟି ଭୂ-ପ୍ରଜାତିର ଚିହ୍ନଟକରଣ କରାଯିବା ସହ ସରକାର ଏ ଦିଗରେ ବେଶ୍ ତତ୍ପରତା ପ୍ରଦର୍ଶନ କରୁଛନ୍ତି । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ କୃଷି ଓ କୃଷକର ବିକାଶ ଆଭିମୁଖ୍ୟକୁ ଓଡ଼ିଶା ମିଲେଟ୍ସ ମିଶନ ଆଗାମୀ ଦିନରେ ସଫଳତାରେ ରୂପାନ୍ତରିତ କରିବ ।

କୃଷି ଓ କୃଷକଙ୍କ ବିକାଶ ସହ ମାଣ୍ଡିଆ ଏବେ ଚାଷୀଙ୍କ ଆର୍ଥିକ ଅଭିବୃଦ୍ଧି କରିବା ସହ ସେମାନଙ୍କୁ ରୋଜଗାର ଦେଇପାରିଛି । ମାଣ୍ଡିଆର ପରିଚୟ ଆଜି ଦେଶ ବିଦେଶରେ ପହଁଚିଛି । କେନ୍ଦ୍ରୀୟ ବଜେଟରେ ଶ୍ରୀ ଅନ୍ନ ପାଇଁ ସ୍ୱତନ୍ତ୍ର ପ୍ୟାକେଜ ଅବା ମିଳିତ ଜାତିସଂଘର ମିଲେଟ ପାଇଁ ସ୍ୱତନ୍ତ୍ର ଘୋଷଣା ସବୁଠି ଏବେ ମାଣ୍ଡିଆର ଜୟ ଜୟକାର । ଓଡ଼ିଶା ମିଲେଟ ସମଗ୍ର ଦେଶରେ ପରିବ୍ୟାପ୍ତ । ଆଗାମୀ ଦିନରେ ମାଣ୍ଡିଆ ସମସ୍ତଙ୍କ ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ନେବ, ଏଥିରେ ସନ୍ଦେହ ନାହିଁ ।

ଜୈବ ନିରୀକ୍ଷକ
ଓଡ଼ିଶା ରାଜ୍ୟ ଜୈବ ପ୍ରମାଣନ ସଂସ୍ଥା, ଭୁବନେଶ୍ୱର

❖ ❖ ❖



# ଓଡ଼ିଶା ମିଲେଟ୍ସ ମିଶନ୍ : ଖାଦ୍ୟ କ୍ଷେତ୍ରରେ ବିପ୍ଳବ

**ରାକେଶ ପଣ୍ଡା**

ଜଣେ ମଣିଷ ଦୈନନ୍ଦିନ ଅକ୍ଲାନ୍ତ ପରିଶ୍ରମ, କଠିନ କାର୍ଯ୍ୟ ଏବଂ ସଂଘର୍ଷ କରି ନିଜର ଯେଉଁ ଲକ୍ଷ୍ୟଗୁଡିକୁ ପୂରଣ କରିବା ନିମନ୍ତେ ସର୍ବଦା ଚେଷ୍ଟିତ ରହେ, ତନ୍ମଧ୍ୟରୁ ମୁଖ୍ୟ ଓ ପ୍ରାଥମିକ ଲକ୍ଷ୍ୟ ହେଉଛି ଖାଦ୍ୟ ଅନ୍ୱେଷଣ କିମ୍ବା ପ୍ରସ୍ତୁତି ଏବଂ ଏହାର ଆହରଣ । ଖାଦ୍ୟ ହେଉଛି ଏକ ଜରୁରୀ ଉପାଦାନ ଏବଂ ଇନ୍ଧନ, ଯାହାକି ମଣିଷକୁ ଦିନସାରା ସକ୍ରିୟ ରଖିଥାଏ । ଏହା ଶରୀରକୁ ବୃଦ୍ଧି କରିବା ସହ ବିଭିନ୍ନ ରାସାୟନିକ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରେ ଏବଂ ଶରୀରକୁ ସୁସ୍ଥ ରଖିଥାଏ । ଦୀର୍ଘ ସମୟ ମଧ୍ୟରେ ସୁସ୍ଥ ଖାଦ୍ୟ ଅଭ୍ୟାସ ଗଠନ ପାଇଁ ଅଧିକାଂଶ ବ୍ୟକ୍ତି ଖାଦ୍ୟର ମହତ୍ତ୍ୱ ବୁଝିବାକୁ ଆବଶ୍ୟକ କରନ୍ତି । ତେବେ, ପ୍ରତିଟି ମଣିଷ ଏହା ଜାଣି ରଖିବା ଆବଶ୍ୟକ ଯେ ଦୈନନ୍ଦିନ କାର୍ଯ୍ୟକଳାପ କରିବା ପାଇଁ ଆମ ଶରୀର ସୁସ୍ଥ ଖାଦ୍ୟରୁ ଶକ୍ତି ଆବଶ୍ୟକ କରିଥାଏ । ଏଠାରେ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି, ଖାଦ୍ୟ ସୁସ୍ୱାଦୁ ସହିତ ସୁଷମ, ସନ୍ତୁଳିତ ଓ ସ୍ୱାସ୍ଥ୍ୟକର ହେବା ନିହାତି ଆବଶ୍ୟକ । ପ୍ରତି ଜୀବର ଶରୀର ନିମନ୍ତେ ସୁସ୍ଥ ଖାଦ୍ୟର କେବଳ ଗୋଟିଏ ନୁହେଁ, ବରଂ ଅନେକ ଲାଭ ରହିଅଛି । ଏହା ଆମକୁ ଜୀବନର ବିଭିନ୍ନ କ୍ଷେତ୍ରରେ ସାହାଯ୍ୟ କରିଥାଏ । ସୁସ୍ଥ ଖାଦ୍ୟ କେବଳ ମଣିଷର ଶାରୀରିକ ସ୍ୱାସ୍ଥ୍ୟ ଉପରେ ନୁହେଁ ବରଂ ମାନସିକ ସ୍ୱାସ୍ଥ୍ୟ ଉପରେ ମଧ ପ୍ରଭାବ ପକାଇଥାଏ । ଯେତେବେଳେ ଜଣେ ବ୍ୟକ୍ତି ପୁଷ୍ଟିଯୁକ୍ତ ଖାଦ୍ୟ ଗ୍ରହଣ କରିଥାଏ ଯାହା ବିଭିନ୍ନ ପୋଷକତତ୍ତ୍ୱ ଏବଂ ଖାଦ୍ୟସାରରେ ପରିପୂର୍ଣ୍ଣ ଅଟେ, ତାହା ଶରୀରରେ ରୋଗ ପ୍ରତିରୋଧକ ଶକ୍ତି ବଢ଼ାଇ ଥାଏ ।



ତେବେ, ବିଶ୍ୱରେ ଉପଲବ୍ଧ ହେଉଥିବା ବିଭିନ୍ନ ସୁଷମ ଖାଦ୍ୟ ଓ ସ୍ୱାସ୍ଥ୍ୟକର ଖାଦ୍ୟଶସ୍ୟ ମଧ୍ୟରୁ ପୁଷ୍ଟିଶସ୍ୟ ଅନ୍ୟତମ । କିଛି ବର୍ଷ ପୂର୍ବରୁ, ଏହା ସାଧାରଣରେ ଲୋକମାନଙ୍କର ଜ୍ଞାତସାରକୁ ଆସି ନ ଥିଲା । କିନ୍ତୁ, ଅତୀତରେ ଏହା ଓଡ଼ିଶାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଲୋକମାନଙ୍କ ପାଇଁ ମୁଖ୍ୟ ଖାଦ୍ୟଭାବେ ବିବେଚିତ ହେଉଥିଲା । ଯେତେବେଳେ ଧାନ ଏବଂ ଅନ୍ୟାନ୍ୟ ଖାଦ୍ୟର ସର୍ବସାଧାରଣ ବଣ୍ଟନ ବ୍ୟବସ୍ଥା ଏବଂ ବିସ୍ତାରିତ ଉପଭୋକ୍ତା ବଜାର ମାଧ୍ୟମରେ ସେମାନଙ୍କ ଦ୍ୱାରରେ ପହଞ୍ଚିଲା, ଆଦିବାସୀମାନେ ପୁଷ୍ଟିଶସ୍ୟକୁ ଏକ ସହାୟକ ଫସଲ ଭାବରେ ବ୍ୟବହାର କରିବା ଆରମ୍ଭ କଲେ । ଏହାକୁ ବିକ୍ରୟ କରିବା ପରିବର୍ତ୍ତେ ସେମାନେ ବ୍ୟବହାର କରିବା କିମ୍ବା ନିଜେ ଆହରଣ କରିବାକୁ ଲାଗିଲେ । ଓଡ଼ିଶାର କନ୍ଧମାଳ ଜିଲ୍ଲାର ଦେଓପଡ଼ା ଗ୍ରାମରେ 'ବୁର୍ଲାଙ୍ଗ ପର୍ବ'ର

ଅଂଶ ଭାବରେ ଆଦିବାସୀମାନେ ଏକ ଶୋଭାଯାତ୍ରା କରିଥାନ୍ତି । 'ଚୁର୍ଲାଙ୍ଗ' ହେଉଛି କୁଟିଆ କନ୍ଧ ଜନଜାତିର ଏକ ପାରମ୍ପରିକ ପର୍ବ, ଯାହାକି ପ୍ରତିବର୍ଷ ପାଳନ କରାଯାଏ । ଏହି ଅବସରରେ ଉକ୍ତ ସମ୍ପ୍ରଦାୟର ସଦସ୍ୟ ବିଶେଷ କରି ମହିଳାମାନେ ପୂଜା କରନ୍ତି ଏବଂ ମଞ୍ଜି ବିନିମୟ କରିଥାନ୍ତି । ପୁଷ୍ଟିଶସ୍ୟ ଉତ୍ପାଦନର ଅଭିବୃଦ୍ଧି ନିମନ୍ତେ, 'ମିଲେଟ୍ ନେଟୱାର୍କ ଅଫ୍ ଇଣ୍ଡିଆ ଏବଂ ନିର୍ମାଣ (NIRMAN)'ର ମିଳିତ ସହଯୋଗରେ ପୁଷ୍ଟିଶସ୍ୟ ବିଷୟରେ ସଚେତନତା ସୃଷ୍ଟି କରିବା ଏବଂ ଯୁବ ଆଦିବାସୀମାନଙ୍କ ମଧ୍ୟରେ ପ୍ରଚଳିତ ନିମ୍ନମାନର କମ୍ପ୍ଲେକ୍ସରୁ ମୁକ୍ତି ପାଇବା ପାଇଁ ବହୁସଂଖ୍ୟାରେ ଚୁର୍ଲାଙ୍ଗ ପର୍ବ ପାଳନ କରିବା ନିମନ୍ତେ ପ୍ରୋତ୍ସାହନ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ଫଳସ୍ୱରୂପ ଖୁବ୍ ଶୀଘ୍ର ଆଦିବାସୀମାନେ ପୁଷ୍ଟିଶସ୍ୟ ପ୍ରତି ଆଗ୍ରହ ପ୍ରକାଶ କରିବାକୁ ଲାଗିଲେ । ଯାହା ଉକ୍ତ ସମ୍ପ୍ରଦାୟ ମଧ୍ୟରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା ଏବଂ ପୁଷ୍ଟିଶସ୍ୟ ବିହନ ବିନିମୟ ଅଧିକ ଜୋରଦାର ହୋଇଥିଲା । ୨୦୧୧ ମସିହାର ଏକ ସମୟରେ ଯେତେବେଳେ ଓଡିଶାରେ ପୁଷ୍ଟିକର ମିଲେଟର ପୁନର୍ଜୀବନ ବ୍ୟାପକ ଦୃଷ୍ଟି ଆକର୍ଷଣ କରୁଥିଲା, କେନ୍ଦ୍ର ଏବଂ ଅନ୍ୟାନ୍ୟ ରାଜ୍ୟ ସରକାର ଏହାର ପ୍ରୋତ୍ସାହନ ନମୁନା ଗ୍ରହଣ କରିବାକୁ ପ୍ରସ୍ତୁତ ଥିଲେ । କନ୍ଧମାଳ ଜିଲ୍ଲାର କୁଟିଆ କନ୍ଧ ଆଦିବାସୀମାନେ ପ୍ରଶଂସା ପାଇବାକୁ ଯୋଗ୍ୟ ହୋଇଥିଲେ ଏବଂ ଫସଲର ବଞ୍ଚିବା ଓ ପରବର୍ତ୍ତୀ ମୁଖ୍ୟ ସ୍ରୋତରେ ସାମିଲ ହେବା ନିମନ୍ତେ ଆଗକୁ ବଢ଼ିଥିଲେ ।

ପରବର୍ତ୍ତୀ ମୁହୂର୍ତ୍ତରେ, ପୁଷ୍ଟିକର ଖାଦ୍ୟ ସୁରକ୍ଷାକୁ ଦୃଷ୍ଟିରେ ରଖି ଏବଂ ରାଜ୍ୟରେ ମିଲେଟ ଉତ୍ପାଦନ ତଥା ବ୍ୟବହାରକୁ ପ୍ରୋତ୍ସାହିତ କରିବା ପାଇଁ ଓଡ଼ିଶା ସରକାରଙ୍କ ଦ୍ୱାରା ''ଓଡ଼ିଶା ମିଲେଟ୍ସ ମିଶନ (ଓଏମଏମ)'' ବହୁ ଭାଗୀଦାରୀ ଅଂଶଗ୍ରହଣକାରୀ ଆଭିମୁଖ୍ୟ ତଥା ଏକ ବିକେନ୍ଦ୍ରୀକରଣ କାର୍ଯ୍ୟକ୍ଷମ ଢାଞ୍ଚା ଏବଂ ସରକାରଙ୍କ ଆର୍ଥିକ ଓ ଆନୁଷ୍ଠାନିକ ସହାୟତା ମାଧ୍ୟମରେ ଆରମ୍ଭ କରାଯାଇଥିଲା । ପ୍ରଥମ ପର୍ଯ୍ୟାୟରେ, ରାଜ୍ୟ ସରକାର ୨୦୧୭ ମସିହାରେ ୭ଟି ଜିଲ୍ଲାକୁ ଅନ୍ତର୍ଭୁକ୍ତ କରୁଥିବା ୩୦ଗୋଟି ବ୍ଲକରେ ଓଡ଼ିଶା ମିଲେଟ୍ସ ମିଶନ ଆରମ୍ଭ କରିଥିଲେ, ଯାହାକି ବର୍ତ୍ତମାନ ୩୦ଟି ଜିଲ୍ଲାର ୧୭୭ଟି ବ୍ଲକକୁ ସମ୍ପ୍ରସାରିତ ହୋଇଛି । ୨୦୧୭ରେ ଓଡ଼ିଶା ସରକାର ଆଦିବାସୀ ସମାଜରେ ଅଧିକ ପୁଷ୍ଟିକର ଏବଂ ଜଳବାୟୁ ସହନଶୀଳ ମିଲେଟର ଗୁରୁତ୍ୱକୁ ଅନୁଭବ କରିଥିଲେ । ୨୦୧୭-୧୮ ଠାରୁ ୨୦୨୨-୨୩ ପର୍ଯ୍ୟନ୍ତ ସର୍ବାଧିକ ୨,୫୦,୦୦୦ ଚାଷୀଙ୍କୁ ଏହି ମିଶନରେ ଅନ୍ତର୍ଭୁକ୍ତ କରାଯାଇଛି । ଏହି ପରିପ୍ରେକ୍ଷୀରେ ଫସଲକୁ ଲୋକପ୍ରିୟ କରିବା ପାଇଁ ଓଡ଼ିଶା ସରକାର ଚଳିତ ମାସ ନଭେମ୍ବର ୧୦ରେ ମାଣ୍ଡିଆ ଦିବସ (ମିଲେଟ ଡେ) ପାଳନ କରୁଛନ୍ତି । ଓଡ଼ିଶା ସରକାର ୨୦୧୭ରେ ଓଡ଼ିଶା ମିଲେଟ୍ସ ମିଶନ (ଓଏମଏମ) ନାମରେ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଆଦିବାସୀ ଅଞ୍ଚଳରେ ମିଲେଟର ପ୍ରଚାର ପାଇଁ ଆରମ୍ଭ କରିଥିଲେ ଏବଂ ଗୋଟିଏ ସମୟରେ ଉତ୍ପାଦନ, ପ୍ରକ୍ରିୟାକରଣ, ବ୍ୟବହାର, ବିପଣନ ଏବଂ ମିଲେଟର ଉତ୍ପାଦନ ଉପରେ ଧ୍ୟାନ ଦେଇଥିଲେ । ଓଡ଼ିଶା ମିଶନ ଶକ୍ତି ବିଭାଗ (ସ୍ୱୟଂ ସହାୟକ ଗୋଷ୍ଠୀଗୁଡିକୁ ଯୋଡ଼ିବା ନିମନ୍ତେ), ଆଦିବାସୀ ବିକାଶ ବିଭାଗ (ଅନୁସୂଚିତ ଜନଜାତି ହଷ୍ଟେଲରେ ମିଲେଟ୍ କ୍ରୟ ଏବଂ ଅନ୍ତର୍ଭୁକ୍ତ କରିବା ଲକ୍ଷ୍ୟରେ), ସମବାୟ ବିଭାଗ (ସଂରକ୍ଷଣ ସହାୟତା ନିମନ୍ତେ) ଏବଂ ମହିଳା ଓ ଶିଶୁ ବିକାଶ ବିଭାଗ ସହିତ ଘନିଷ୍ଠ ସମନ୍ୱୟରେ ଓଡ଼ିଶା ମିଲେଟ୍ସ ମିଶନକୁ କାର୍ଯ୍ୟକାରୀ କରାଯାଉଛି । ଚାଷ ଜମିରେ ମିଲେଟକୁ ପୁନର୍ଜୀବିତ କରିବା ହେଉଛି ଓଡ଼ିଶା ମିଲେଟ୍ସ ମିଶନର ଉଦ୍ଦେଶ୍ୟ ।

ତେବେ, ଜିଲ୍ଲାସ୍ତରରେ ମିଲେଟ ଫସଲର ଉତ୍ପାଦକତାରେ ଉନ୍ନତି ଆଣିବା ନିମନ୍ତେ ଉନ୍ନତ କୃଷି ପ୍ରଣାଳୀ ସହିତ ଫସଲ ପ୍ରଦର୍ଶନ ଯେପରିକି ମିଲେଟ୍ର ସଘନ ଚାଷ ପ୍ରଣାଳୀ, ଧାଡ଼ି ରୁଆ, ଧାଡ଼ିରେ ବିହନ ବୁଣା ଏବଂ ପ୍ରାକୃତିକ ଚାଷ ଅଭ୍ୟାସ ମାଧ୍ୟମରେ ଅନ୍ତଃଫସଲ ପ୍ରଣାଳୀକୁ ମଧ୍ୟ ପ୍ରୋତ୍ସାହିତ କରାଯାଉଛି । ଜମିର ସଂରକ୍ଷଣ ଏବଂ ପ୍ରୋତ୍ସାହନ ନିମନ୍ତେ ଓଡ଼ିଶା କୃଷି ଏବଂ ବୈଷୟିକ

ବିଶ୍ୱବିଦ୍ୟାଳୟ ଏବଂ ଭାରତୀୟ ପୁଷ୍ଟିଶସ୍ୟ ଗବେଷଣା ଅନୁଷ୍ଠାନର ବୈଷୟିକ ମାର୍ଗଦର୍ଶନରେ ଉନ୍ନତ କିସମ ସହିତ ସ୍ଥାନୀୟ କିସମର ବିଭିନ୍ନ ପରୀକ୍ଷା ଓ ଗବେଷଣା କରାଯାଉଛି । ବର୍ତ୍ତମାନ ସମୟରେ ରାଜ୍ୟରେ ପୁଷ୍ଟିଶସ୍ୟର ପ୍ରଚାର ପ୍ରସାର ଓ ସାଧାରଣ ଲୋକଙ୍କ ନିକଟରେ ପହଞ୍ଚାଇବା ନିମନ୍ତେ ଘରୋଇ ସ୍ତରରେ ପୁଷ୍ଟିଶସ୍ୟର ବ୍ୟବହାରକୁ ପ୍ରୋତ୍ସାହିତ କରିବା ପାଇଁ ଓଡ଼ିଶା ସରକାର- ଖାଦ୍ୟ ଉତ୍ସବ, ମିଲେଟ ରେସିପି କାର୍ଯ୍ୟକ୍ରମ, ମିଲେଟ ମା' କାର୍ଯ୍ୟକ୍ରମ, ପଥପ୍ରାନ୍ତ ନାଟକ ଇତ୍ୟାଦି ମାଧ୍ୟମରେ ଗ୍ରାମ ତଥା ପଞ୍ଚାୟତସ୍ତରରେ ବ୍ୟାପକ ସଚେତନତା ଅଭିଯାନକୁ ତ୍ୱରାନ୍ୱିତ କରୁଛନ୍ତି । ଏସବୁ ଯୋଜନାଗୁଡ଼ିକୁ ଅଙ୍ଗନୱାଡ଼ି କର୍ମୀ ଏବଂ ଗ୍ରାମ୍ୟସ୍ତରରେ କିଛି ପ୍ରତିଷ୍ଠିତ ବ୍ୟକ୍ତିଙ୍କ ସକ୍ରିୟ ଯୋଗଦାନ ସହିତ ସ୍ୱୟଂ ସହାୟକ ଗୋଷ୍ଠୀଗୁଡିକ ମାଧ୍ୟମରେ ତୃଣମୂଳସ୍ତରରେ କାର୍ଯ୍ୟକାରୀ କରାଯାଉଛି । ଏଥିସହ ଅମଳ ପରେ ରାଜ୍ୟର କୋଣ ଅନୁକୋଣରେ ବିକେନ୍ଦ୍ରୀକରଣକୁ ବିଭିନ୍ନ ସରକାରୀ ସଂସ୍ଥା ମାଧ୍ୟମରେ ତ୍ୱରାନ୍ୱିତ କରିବା, ମୂଲ୍ୟଯୋଗ ଉଦ୍ୟୋଗଗୁଡିକର ପଦୋନ୍ନତି, ଗ୍ରାମପଞ୍ଚାୟତ ଓ ବ୍ଲକସ୍ତରରେ ଟିଫିନ୍ ସେଣ୍ଟର ଏବଂ ଜିଲ୍ଲାସ୍ତରରେ ମିଲେଟ୍ ଆଉଟ୍‌ଲେଟ୍ ନିମନ୍ତେ ପ୍ରୋତ୍ସାହନ ଦିଆଯାଉଛି । ବିପଣନ ଏବଂ ରପ୍ତାନି ନିମନ୍ତେ ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକ ଦ୍ୱାରା ସରକାରୀ ଯୋଜନାରେ ମିଲେଟ କ୍ରୟ ଏବଂ ଅନ୍ତର୍ଭୁକ୍ତ କରାଯାଇ ଓଡ଼ିଶା ମିଲେଟ୍ସ ମିଶନ ଅଧୀନରେ ଆଦିବାସୀ ବିକାଶ ସମବାୟ ନିଗମକୁ ପ୍ରମୁଖ କ୍ରୟ ସଂସ୍ଥା ଭାବରେ ଚୟନ କରାଯାଇଛି ।

କୃଷି ଏବଂ କୃଷକ କଲ୍ୟାଣ ମନ୍ତ୍ରାଣାଳୟ, ଭାରତ ସରକାର ଏବଂ ନିତି ଆୟୋଗ, ଓଡ଼ିଶା ମିଲେଟ୍ସ ମିଶନକୁ ସର୍ବୋତ୍ତମ ମଡେଲ ଭାବରେ ଚିହ୍ନଟ କରିଛନ୍ତି ଏବଂ ମିଲେଟର ପ୍ରଚାର ପାଇଁ ମିଶନର ଆଭିମୁଖ୍ୟ ଗ୍ରହଣ କରିବାକୁ ଅନ୍ୟ ବିଭିନ୍ନ ରାଜ୍ୟ ସରକାରଙ୍କୁ ପରାମର୍ଶ ଦେଇଛନ୍ତି । ଓଡ଼ିଶା ମିଲେଟ୍ସ ମିଶନର ମଡେଲକୁ ବୁଝିବା ଏବଂ ଓଡ଼ିଶା ମିଲେଟ୍ସ ମିଶନର ଶିକ୍ଷା ଓ ଗବେଷଣାଲବ୍ଧ କାମକୁ ଆଧାର କରି ମିଲେଟ ଉପରେ ଭାରତ ସରକାର ଏକ ଟାସ୍କଫୋର୍ସ ଗଠନ କରିଛନ୍ତି । ତେବେ, ଉକ୍ତ ଓଡ଼ିଶା ମିଲେଟ୍ସ ମିଶନ ଖାଲି ଭାରତ ନୁହେଁ ସାରା ବିଶ୍ୱରେ ଏକ ବିପ୍ଳବରେ ପରିଣତ ହୋଇଛି । ୱାର୍ଲ୍ଡ ଫୁଡ୍ ପ୍ରୋଗ୍ରାମ୍ ଓଡ଼ିଶା ମିଲେଟ୍ସ ମିଶନକୁ ଏକ ସର୍ବୋତ୍ତମ କାର୍ଯ୍ୟକ୍ରମ ଭାବରେ ଚିହ୍ନଟ କରିଛି । ଓଡ଼ିଶା ରାଜ୍ୟ ବିଶ୍ୱରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବା ସହ ଉକ୍ତ ଖାଦ୍ୟ ବିପ୍ଳବର ନେତୃତ୍ୱ ନେଇଛି । ଯାହାକି ସାରା ରାଜ୍ୟବାସୀଙ୍କ ନିମନ୍ତେ ଗର୍ବ ଓ ଗୌରବର ବିଷୟ ଅଟେ । ପୁରସ୍କାର ଏବଂ ସ୍ୱୀକୃତି କ୍ଷେତ୍ରରେ ୨୦୨୧ ମସିହାରେ କୃଷି ମନ୍ତ୍ରାଳୟ ଦ୍ୱାରା ଓଡ଼ିଶା ଜାତୀୟ ସମ୍ମିଳନୀରେ ନ୍ୟୁଟ୍ରି ସିରିଏଲ ଉପରେ 'ଶ୍ରେଷ୍ଠ ମିଲେଟ ପ୍ରମୋଟିଂ' ରାଜ୍ୟ ଭାବେ ସମ୍ମାନିତ ହୋଇଥିଲା । ତେବେ, ପ୍ରତିଟି ସାଧାରଣ ଲୋକ ନିଜର ଦୈନନ୍ଦିନ ଜୀବନଶୈଳୀ ଓ ଖାଦ୍ୟ ସାରଣୀରେ ମିଲେଟକୁ ସ୍ଥାନିତ କରି ଏହି ବିପ୍ଳବରେ ନିଜର ଏକ ସ୍ୱତନ୍ତ୍ର ଯୋଗଦାନ ନିମନ୍ତେ ଆଗେଇ ଆସିବା ଉଚିତ । ଏହି ପୁଷ୍ଟିକର ଖାଦ୍ୟର ବ୍ୟବହାର ଆଗାମୀ ସମୟରେ ଗୋଟିଏ ସୁସ୍ଥ ଓ ନିରାମୟ ସମାଜର ପ୍ରତିଷ୍ଠା ଦିଗରେ ବେଶ୍ ସହାୟକ ହେବ ଏବଂ ରାଜ୍ୟ ସରକାରଙ୍କର ଲକ୍ଷ୍ୟ ଯୋଜନା ଓ ପରିଶ୍ରମ ସାର୍ଥକ ହେବ ।

ବନ୍ଦାଲୋ, ଟାଙ୍ଗୀ,କଟକ

❖ ❖ ❖

# ଜୀବନ ଜୀବିକାରେ ଶ୍ରୀ ଅନ୍ନ

**ସତ୍ୟବ୍ରତ ପାଣିଗ୍ରାହୀ**

ଭାରତରେ ଜନଜାତିଙ୍କ ଜୀବନ ଓ ଜୀବିକାର ଏକ ଅବିଚ୍ଛେଦ୍ୟ ଅଙ୍ଗ ହେଉଛି ମିଲେଟ । ଜଳ, ଜଙ୍ଗଲ ଓ ଜମିକୁ ଆଧାର କରି ଜୀବନ ବଞ୍ଚୁଥିବା ଜନଜାତିଙ୍କ ଜୀବିକାର ମାଧ୍ୟମ ହେଉଛି ମିଲେଟ ଚାଷ । ଆଦିବାସୀଙ୍କ ସଭ୍ୟତା ଯେତିକି ପ୍ରାଚୀନ, ମିଲେଟ୍ ସହ ସେମାନଙ୍କ ସମ୍ପର୍କ ମଧ୍ୟ ସେତିକି ପୁରାତାନ । କୁହାଯାଏ ଯେ ମିଲେଟ ପୃଥିବୀର ସର୍ବପ୍ରାଚୀନ ଖାଦ୍ୟଶସ୍ୟ । ବର୍ତ୍ତମାନ ଓ ଭବିଷ୍ୟତର ଖାଦ୍ୟ ରୂପେ ଏହା ବିବେଚିତ ହେଲାଣି । ଜମିର ସନ୍ଧାନରେ ଆଦିମ ମଣିଷ ଦେଶାନ୍ତର ଯାତ୍ରା କରିବା ଭଳି ମିଲେଟ ମଧ୍ୟ ପୃଥିବୀର ଗୋଟିଏ ଭୂ-ଭାଗରୁ ଅନ୍ୟ ଏକ ଭୂଭାଗକୁ ଯାତ୍ରା କରିଛି । ବର୍ତ୍ତମାନ ପ୍ରାୟ ୧୩୦ରୁ ଅଧିକ ଦେଶରେ ମିଲେଟ ଚାଷ ହେଉଛି । ଏସିଆ ଓ ଆଫ୍ରିକା ମହାଦେଶର ଅଧିକାଂଶ ଲୋକଙ୍କ ମୁଖ୍ୟ ପାରମ୍ପରିକ ପୁଷ୍ଟିକର ଖାଦ୍ୟ ରୂପେ ମିଲେଟ ବିବେଚିତ ହୋଇଛି । ବର୍ତ୍ତମାନ ବିଶ୍ୱର ୨୦ ପ୍ରତିଶତ ଏବଂ ଏସିଆ ମହାଦେଶର ୮୦ ପ୍ରତିଶତ ମିଲେଟ କେବଳ ଭାରତରେ ଉତ୍ପାଦନ ହେଉଛି । ରଗ ବେଦରେ ମିଲେଟ ଶସ୍ୟ ସମ୍ବନ୍ଧରେ ସଂସ୍କୃତ ଭାଷାରେ ବିଭିନ୍ନ ନାମ ଓ ପ୍ରକାରଭେଦ ଉଲ୍ଲେଖ ଅଛି । ୭୦୦୦ ବର୍ଷ ପୂର୍ବେ ଚୀନର ୟାଙ୍ଗ ସଭ୍ୟତାରେ ମିଲେଟ ଚାଷ ଆରମ୍ଭ ହୋଇଥିଲା । ଚୀନ୍‌ର 'ଶି ଜିଙ୍ଗ' ଗ୍ରନ୍ଥ (ଖ୍ରୀଷ୍ଟପୂର୍ବ ୧୦୦୦-୨୦୦୦) ଓ 'ଫାନ ସେନ ଚିସୁ' (ଖ୍ରୀଷ୍ଟପୂର୍ବ ୨୮୦୦) ଗ୍ରନ୍ଥରେ ମିଲେଟ ଜାତୀୟ ଶସ୍ୟର ବର୍ଣ୍ଣନା ରହିଛି । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରଠାରୁ ଆରମ୍ଭ କରି କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳମ୍'ରେ ମିଲେଟର ଗୁଣଗାନ କରାଯାଇଛି । ସୁମେରିଆନ ସାହିତ୍ୟ ଏବଂ ହିବ୍ରୁ ବାଇବେଲରେ ମିଲେଟର କଥା ସ୍ଥାନ ପାଇଛି । ପ୍ରତ୍ନତାତ୍ତ୍ୱିକ ଗବେଷଣାରୁ ଜଣାଯାଇଛି ଯେ, ପ୍ରାଚୀନ ହରପ୍ପା ଓ ମହେଞ୍ଜୋଦାରୋ ସଭ୍ୟତା, ମାୟା ସଭ୍ୟତା ଓ ଇନକା ସଭ୍ୟତାରେ ମଧ୍ୟ ପୁଷ୍ଟିଶସ୍ୟ ଖାଦ୍ୟର ପ୍ରଚଳନ ଥିଲା । କୃଷିଭିତ୍ତିକ ସଭ୍ୟତାରେ ମିଲେଟ ଥିଲା ଉଭୟ ଜୀବନଶୈଳୀ ଓ ଜୀବିକା ନିର୍ବାହର ଏକ ପ୍ରମୁଖ ଅଂଶ । ମାଟିର ମଣିଷ ମାଟିରେ ଫଳାଉଥିଲା ସୁନାର ଫସଲ ମାଣ୍ଡିଆ । ସମୟ ସ୍ରୋତରେ ଶିଳ୍ପାୟନ ସହ ତାଳ ଦେଇ ସେହି ପରମ୍ପରାରୁ କିଛି ମାତ୍ରାରେ ଦୂରେଇ ଯାଇଥିଲେ ସୁଦ୍ଧା ବର୍ତ୍ତମାନ ମିଲେଟର ଘରବାହୁଡ଼ା ହୋଇଛି । ବିଶ୍ୱ ସ୍ତରରେ ମିଲେଟ ଚାଷ ଏକ ବିପ୍ଳବରେ ପରିଣତ ହୋଇଛି । ଭାରତର ପ୍ରସ୍ତାବରେ ଜାତିସଂଘ ମଧ୍ୟ ଚଳିତ ୨୦୨୩ ବର୍ଷକୁ ଅନ୍ତର୍ଜାତୀୟ ମିଲେଟ୍ ବର୍ଷ ଭାବେ ଘୋଷଣା କରିଛି ।



ଆଦିବାସୀଙ୍କୁ ବାଦ୍ ଦେଇ ମିଲେଟର ଯାତ୍ରା କଳନା କରିହେବ ନାହିଁ । ସେମାନଙ୍କ ସଂସ୍କୃତି, ପର୍ବପର୍ବାଣିରେ ମାଣ୍ଡିଆର ସ୍ଥାନ ସ୍ୱତନ୍ତ୍ର । ଜନଜାତିଙ୍କ ଜୀବନ, ଜୀବିକା, ଓ ଜଗତ ସହ ମାଣ୍ଡିଆର ସମ୍ପର୍କ ଅତି ନିବିଡ଼ । ଯୁଗ ଯୁଗ ଧରି ଆଦିବାସୀଙ୍କ ଅର୍ଥନୀତି ଓ ଅନ୍ନରେ ମାଣ୍ଡିଆ ସାମିଲ ହୋଇଆସିଛି । ମାଣ୍ଡିଆ ଅମଳ ହେବା ପରେ ଆଦିବାସୀମାନେ ହର୍ଷୋଲ୍ଲାସରେ ଲୋକନୃତ୍ୟ ସହ କୃଷିଭିତ୍ତିକ ପର୍ବ ପାଳନ କରନ୍ତି । ନାଗାଲାଣ୍ଡର ୟୁମଚୁଙ୍ଗେର ନାଗା ଜନଜାତି ମିଲେଟକୁ କେବଳ ଖାଦ୍ୟ ରୂପେ ଗ୍ରହଣ ନ କରି ଔଷଧର ମର୍ଯ୍ୟାଦା ଦିଅନ୍ତି । ମିଲେଟକୁ ଖାଦ୍ୟଥାଳିରେ ଅନ୍ତର୍ଭୁକ୍ତ କରାଯିବା ଦ୍ୱାରା ଅନେକ ରୋଗରୁ ମୁକ୍ତି ମିଳେ ଏବଂ ଔଷଧର ଆବଶ୍ୟକତା ପଡ଼େ ନାହିଁ ବୋଲି ସେମାନଙ୍କ ଯୁକ୍ତି ରହିଛି, ଯାହାକି ଏବେ ବିଜ୍ଞାନସମ୍ମତ । ଏହି ନାଗା ଆଦିବାସୀମାନେ ଅଗଷ୍ଟ ମାସରେ ମିଲେଟ ଅମଳ ହେବା ପରେ ଆନନ୍ଦ ଉଲ୍ଲାସରେ 'ମେତୁମନିଉ' ପର୍ବ ପାଳନ କରନ୍ତି । ସେହିଭଳି ଆନ୍ଧ୍ରପ୍ରଦେଶର ବିଶାଖାପାଟଣା ଅଞ୍ଚଳର ଲୋକେ ଜୁନ-ଜୁଲାଇ ମାସରେ ପାଳନ କରନ୍ତି 'ମାଣ୍ଡକିୟ ପର୍ବ' । ଏହି ପର୍ବରେ ସେମାନେ ପୋଷା ବଳଦକୁ ମାଣ୍ଡିଆ ପ୍ରସ୍ତୁତ ଖାଦ୍ୟ ଦିଅନ୍ତି । ନାଗଚତୁର୍ଥୀରେ ମାଣ୍ଡିଆରୁ ପ୍ରସ୍ତୁତ ଭୋଗ ନାଗଦେବତାଙ୍କୁ ଅର୍ପଣ କରିବା ପରମ୍ପରା ଆନ୍ଧ୍ରପ୍ରଦେଶରେ ରହିଛି । ମଧ୍ୟପ୍ରଦେଶରେ ମାଣ୍ଡିଆର ବ୍ୟବହାରକୁ ନେଇ ଏକ ନିଆରା ପରମ୍ପରା ଅଛି । ସେଠାରେ ବିବାହ ସମୟରେ ବର-କନ୍ୟାଙ୍କ ଶରୀରରେ ମାଣ୍ଡିଆ ଓ ତେନ୍ତୁଳିର ମିଶ୍ରଣକୁ ଲେପନ କରାଯାଏ । ସେହିପରି ମାଣ୍ଡିଆ ସହ ଯୋଡ଼ି ହୋଇଛି ଅନେକ ଧାର୍ମିକ ବିଶ୍ୱାସ । ଛତିଶଗଡ଼ ରାଜ୍ୟର ପାର୍ବତ୍ୟ ଅଞ୍ଚଳରେ ବସବାସ କରୁଥିବା କରଓ୍ୱା ଆଦିବାସୀମାନେ ଘର ଅଗଣାରେ ମାଣ୍ଡିଆ ଶସ୍ୟର କେଣ୍ଡାକୁ ଟଙ୍ଗାଇ ରଖନ୍ତି । ଏହାଦ୍ୱାରା ଭୂତପ୍ରେତ ଘରେ ପ୍ରବେଶ କରନ୍ତି ନାହିଁ ଏବଂ ଭଲ ଫସଲ ଅମଳ ହୁଏ ବୋଲି ଜନଜାତିଙ୍କ ବିଶ୍ୱାସ ରହିଛି ।

ଦକ୍ଷିଣ ଓଡ଼ିଶାର ଆଦିବାସୀଙ୍କ ପ୍ରମୁଖ ଖାଦ୍ୟ ହେଉଛି ମାଣ୍ଡିଆ ବା ଫିଙ୍ଗର ମିଲେଟ । ରାୟଗଡ଼ା ଜିଲ୍ଲାର ନିୟମଗିରି ଅଞ୍ଚଳର ଡଙ୍ଗରିଆ କନ୍ଧମାନେ ପାରମ୍ପରିକ ପ୍ରଣାଳୀରେ ମାଣ୍ଡିଆ ଚାଷ କରନ୍ତି ଏବଂ ତାକୁ ନେଇ ନିକଟସ୍ଥ ହାଟ ବଜାରରେ ବିକ୍ରି କରି ରୋଜଗାର କରନ୍ତି । ଏବେ ମଧ୍ୟ କ୍ଷେତକୁ ଯିବାବେଳେ ଆଦିବାସୀଟିଏ ସାଙ୍ଗରେ ନେଇଯାଏ ମାଣ୍ଡିଆ ଜାଉ ବା ମାଣ୍ଡିଆ ପେଜ । ଦିନ ସାରା ପରିଶ୍ରମ ପାଇଁ ଏହି ମାଣ୍ଡିଆ ଜାଉହିଁ ତାକୁ ଶକ୍ତି ଯୋଗାଏ । ଆଦିବାସୀଙ୍କ ନିତିଦିନିଆ ଖାଦ୍ୟ ତାଲିକାରେ ମାଣ୍ଡିଆର ସ୍ଥାନ ସର୍ବାଗ୍ରେ । ମାଣ୍ଡିଆହିଁ ଆଦିବାସୀ କୁଟୀରର 'ଶ୍ରୀ' ବା ଲକ୍ଷ୍ମୀ । କୋରାପୁଟର କନ୍ଧ, ପରଜା, ବଣ୍ଡା ଜନଜାତିର ଲୋକେ ମାଣ୍ଡିଆରୁ ବିଭିନ୍ନ ଖାଦ୍ୟ ପ୍ରସ୍ତୁତ କରନ୍ତି । ମାଣ୍ଡିଆରୁ ସେମାନେ ତିଆରି କରନ୍ତି ପିଠା, ରୁଟି, ତମ୍ପ ଇତ୍ୟାଦି । ବର୍ତ୍ତମାନ ସମୟରେ ଏସବୁ ଖାଦ୍ୟ ବଡ ବଡ ମେଟ୍ରୋ ସହରରେ ମଧ୍ୟ ଉପଲବ୍ଧ । ଆଦିବାସୀ କୁଟୀରରୁ ସହରର କାଫେ ଯାଏଁ, କୋରାପୁଟରୁ କଲିକତା ଯାଏଁ, ପଲ୍ଲୀରୁ ଦିଲ୍ଲୀ ଯାଏଁ ସବୁଠି ମିଲେଟ ଖାଦ୍ୟର ଚାହିଦା ବଢ଼ିବାରେ ଲାଗିଛି । ବିଭିନ୍ନ ରାଜ୍ୟରେ ବିଶେଷ କରି ଓଡ଼ିଶା ସରକାରଙ୍କ ମିଲେଟ ମିଶନ ମିଲେଟ ଚାଷକୁ ପ୍ରୋତ୍ସାହନ ଦେଉଛନ୍ତି । ମିଶନ ଶକ୍ତିର ମହିଳାମାନେ ମାଣ୍ଡିଆ, ସୁଆଁ, କାଙ୍ଗୁରୁ ପ୍ରସ୍ତୁତ କରୁଛନ୍ତି ବିଭିନ୍ନ ପ୍ରକାରର ସୁସ୍ୱାଦୁ ଖାଦ୍ୟ । ଅବଶ୍ୟ ପରମ୍ପରା ସହ ମିଶିଛି ଆଧୁନିକତା । ମିଲେଟ କାଫେରେ ମାଣ୍ଡିଆରୁ ପ୍ରସ୍ତୁତ ମିକ୍ସଚର, ମୁଢ଼ିକି, ଲଡୁ, ଦୋସା, ଇଡିଲି, ବିସ୍କୁଟ, ପକୋଡ଼ି, ପାମ୍ପଡ, ପିଠା, ବରା, କ୍ଷୀରି ଆଦି ନାନା ରକମର ଖାଦ୍ୟ ବ୍ୟଞ୍ଜନର ପସରା ଦେଖିବାକୁ ମିଳୁଛି । ଏସବୁ ବିକ୍ରି କରି ମହିଳାମାନେ ସ୍ୱାବଲମ୍ବୀ ହେବା ସହ କିଛି ଅର୍ଥ ରୋଜଗାର କରୁଛନ୍ତି । ଏହା ସହ ମିଲେଟ ଖାଦ୍ୟର ବ୍ୟବସାୟୀକରଣ ଆରମ୍ଭ ହୋଇଯାଇଛି ।

ଷାଠିଏ ଦଶକରେ ସବୁଜ ବିପ୍ଳବ ଆରମ୍ଭ ହେବା ପରେ ଭାରତର ବିଭିନ୍ନ ସ୍ଥାନରେ ଧାନ ଓ ଗହମ ଚାଷର

ଗୁରୁତ୍ୱ ବଢ଼ିଯାଇଥିଲା । ଯାହା ଫଳରେ ମିଲେଟ ଚାଷ ପ୍ରତି ଅବହେଳା ହୋଇଥିଲା ଏବଂ ମିଲେଟ ଉତ୍ପାଦନ କମିବାରେ ଲାଗିଥିଲା । ସବୁଜ ବିପ୍ଳବ ପୂର୍ବରୁ ଦେଶର ୩୬ ମିଲିୟନ ହେକ୍ଟର ଜମିରେ ମିଲେଟ ଚାଷ କରାଯାଉଥିବା ବେଳେ ୨୦୧୬–୧୭ ମସିହାରେ ଏହାର ପରିମାଣରେ ହ୍ରାସ ଘଟି ମାତ୍ର ୧୪ମିଲିୟନ ହେକ୍ଟରରେ ପହଞ୍ଚିଥିଲା । ଧାନ,ଗହମ ଭଳି ଶ୍ୱେତସାର ଖାଦ୍ୟ ଭାରତୀୟଙ୍କ ମୁଖ୍ୟ ଆହାରରେ ପରିଣତ ହେଲା । ଖାଦ୍ୟ ଥାଳିରୁ ମାଣ୍ଡିଆ ହଜିଯିବା ପରେ ଭାରତୀୟଙ୍କ ଶରୀରରେ ଶର୍କରା ପରିମାଣରେ ଅନିୟମିତତା ଦେଖାଗଲା । ଯାହାଫଳରେ ବର୍ତ୍ତମାନ ଭାରତର ମଧୁମେହ ରୋଗୀଙ୍କ ସଂଖ୍ୟା ଅଧିକ ପରିମାଣରେ ବୃଦ୍ଧି ପାଉଛି । ଗ୍ଲୋବାଲ ହଙ୍ଗର ଇଣ୍ଡେକ୍ସ ୨୦୨୨ରେ ୮୧ ଦେଶ ମଧ୍ୟରେ ଭାରତର ସ୍ଥାନ ରହିଛି ୬୪ । ଶିଶୁ ଅପପୁଷ୍ଟିରେ ଭାରତ ଆଗରେ ଅଛି । ଏହାର ମୁଖ୍ୟ କାରଣ ହେଉଛି ଧାନ ଓ ଗହମ ଶସ୍ୟକୁ ଅଧିକ ଗୁରୁତ୍ୱ ଦେବା ସହ ଅନେକ ଦଶନ୍ଧି ଧରି ମାଣ୍ଡିଆର ମହତ୍ତ୍ୱ ଉପଲବ୍ଧ ନ କରିବା । ହେଲେ ମିଲେଟ ଏବେ ପୁଣିଥରେ ତା' ହୃତଗୌରବ ଫେରିପାଇଛି । ମିଲେଟର ବହୁଳ ଉପାଦେୟତାକୁ ଦୃଷ୍ଟିରେ ରଖି, ଏହାକୁ 'ଶ୍ରୀ ଅନ୍ନ' ଓ 'ସୁପର ଫୁଡ୍'ର ମାନ୍ୟତା ମିଳିଛି । ମିଲେଟରେ ଅଧିକ ପରିମାଣରେ ପୁଷ୍ଟିସାର, ତନ୍ତୁ, ଭିଟାମିନ ଓ ଧାତବ ପଦାର୍ଥ ଥାଏ । ମିଲେଟ୍ ଖାଦ୍ୟ ଗ୍ଲୁଟେନ୍ ମୁକ୍ତ ହୋଇଥିବାରୁ ଗ୍ଲୁଟେନ ଖାଦ୍ୟ ସହ୍ୟ କରୁନଥିବା ଲୋକଙ୍କ ପାଇଁ ବେଶ୍ ଉପଯୋଗୀ । ଏହାସହ ଡାଇବେଟିସ, ଉଚ୍ଚ କୋଲେଷ୍ଟରଲ, ମେଦ ବହୁଳତା, ହୃଦ୍ ରୋଗରେ ପୀଡିତ ଲୋକଙ୍କ ସମସ୍ୟା ଦୂର କରେ ମିଲେଟ ଖାଦ୍ୟ । ଜନଜାତି ସଂପ୍ରଦାୟର ଚାଷୀମାନଙ୍କ ଖାଦ୍ୟ, ପୁଷ୍ଟି ଏବଂ ରୋଜଗାରର ମାଧ୍ୟମ ଯୋଗାଇବାରେ ଏହି ମାଣ୍ଡିଆ ଚାଷ ମୁଖ୍ୟ ଭୂମିକା ଗ୍ରହଣ କରିଆସିଛି । କମ୍ ସମୟ ଅବଧିରେ ଏବଂ ପ୍ରତିକୂଳ ପରିସ୍ଥିତିରେ ପାର୍ବତ୍ୟ କିମ୍ବା ମାଳ ଅଞ୍ଚଳରେ ମଧ୍ୟ ମିଲେଟ ଚାଷ କରାଯାଇପାରିବ । ଏଥିପାଇଁ ଅଧିକ ପରିଶ୍ରମ କିମ୍ବା ଅଧିକ ଜଳସେଚନର ଆବଶ୍ୟକତା ନାହିଁ । ସେଥିପାଇଁ ଅନ୍ୟ ଫସଲ ତୁଳନାରେ ମିଲେଟ ଚାଷ ଅଧିକ ଫଳପ୍ରଦ । ପାରମ୍ପରିକ ପଦ୍ଧତିରେ ସ୍ୱଳ୍ପ ଖର୍ଚ୍ଚରେ ମିଲେଟ ଚାଷ ସମ୍ଭବପର ହୋଇଥିବାରୁ ଏହା ପରିବେଶ ଅନୁକୂଳ । ମିଲେଟ୍ ଚାଷର ବୃଦ୍ଧି ଫଳରେ ପରିବେଶରେ କାର୍ବନ ପରିମାଣକୁ କମାଯାଇପାରିବ । ଚାଷୀଙ୍କ ପାଇଁ ଆୟ ସୃଷ୍ଟି କରିବା ସହ ଏହି ମିଲେଟ୍ ଚାଷ ଦେଶର ଖାଦ୍ୟ ନିରାପତ୍ତାକୁ ମଧ୍ୟ ସୁଦୃଢ଼ କରିପାରିବ । ଏଥିପାଇଁ ମିଲେଟକୁ ପ୍ରୋତ୍ସାହନ ଦେବା ନିମନ୍ତେ ସରକାରୀ, ବେସରକାରୀ ସ୍ତରରେ ପ୍ରୟାସ ଦେଖିବାକୁ ମିଳୁଛି । ବିଭିନ୍ନ ସ୍ୱେଚ୍ଛାସେବୀ ସଙ୍ଗଠନ ମଧ୍ୟ ଗ୍ରାମାଞ୍ଚଳରେ ମିଲେଟ ଚାଷ ସମ୍ପର୍କରେ ଆଦିବାସୀଙ୍କୁ ନେଇ କାମ କରୁଛନ୍ତି । ଗଣମାଧ୍ୟମରେ ଏହାର ପ୍ରଚାର ପ୍ରସାର କରିବା ସହ ସଚେତନତା ସୃଷ୍ଟି କରିବା ଫଳରେ ମିଲେଟ ଚାଷ ଏକ ଗଣ ଆନ୍ଦୋଳନରେ ପରିଣତ ହୋଇଛି । ବିଭିନ୍ନ ରାଜ୍ୟ ସରକାର ମିଲେଟ ଜାତୀୟ ଶସ୍ୟକୁ ସାଧାରଣ ବଣ୍ଟନ ବ୍ୟବସ୍ଥାରେ ଏବଂ ସ୍କୁଲଗୁଡ଼ିକରେ ଦିଆଯାଉଥିବା ମଧ୍ୟାହ୍ନ ଭୋଜନରେ ସାମିଲ କରିବା ପାଇଁ ଯୋଜନା କରୁଛନ୍ତି, ଯାହା ଏକ ସମୟପୋଯୋଗୀ ପଦକ୍ଷେପ । ଏହା ସହ ମାଣ୍ଡିଆରୁ ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପର ବିକାଶ କରାଯାଇପାରିଲେ ଅନେକ ନିଯୁକ୍ତି ସୁଯୋଗ ସୃଷ୍ଟି ହେବା ସହ ପୁଷ୍ଟିକର ମିଲେଟ ଖାଦ୍ୟର ଚାହିଦା ବଢ଼ିବ । ଆଶା କରାଯାଇପାରେ ଯେ ମିଲେଟ ଚାଷର ପୁନରୁଦ୍ଧାର ସହ ଜୀବନ ଜୀବିକା କ୍ଷେତ୍ରରେ ନିଶ୍ଚିତ ରୂପେ ନୂଆ ସମ୍ଭାବନା ଦେଖାଦେବ ।

ଗୁଣପୁର, ରାୟଗଡ଼ା

❖ ❖ ❖

# ଓଡ଼ିଶାରେ କ୍ଷୁଦ୍ର ଶସ୍ୟଜାତୀୟ ଫସଲ ନିମନ୍ତେ ଗବେଷଣା ଓ କିସମର ବିକାଶ

ଡ.ପବିତ୍ର ମୋହନ ମହାପାତ୍ର

ମିଲେଟ୍‌ଗୁଡ଼ିକ ହେଉଛି କ୍ଷୁଦ୍ରଶସ୍ୟ ବିଶିଷ୍ଟ, ଭିନ୍ନ ଏକ ରୂପାନ୍ତରିତ ଘାସର ଗୋଷ୍ଠୀ, ଯାହା ସାରା ବିଶ୍ୱରେ ମାନବ ଖାଦ୍ୟ ପାଇଁ ଉଦ୍ଦିଷ୍ଟ ଶସ୍ୟଜାତୀୟ ଫସଲ ଏବଂ ପଶୁ ଖାଦ୍ୟ ରୂପେ ବ୍ୟବହୃତ ହୋଇଥାଏ । ଏସିଆ ଏବଂ ଆଫ୍ରିକାର ଶୁଷ୍କ ଅଞ୍ଚଳ ବିଶେଷ କରି ଭାରତ ଏବଂ ନାଇଜେରିଆରେ ମିଲେଟ୍ ଏକ ଗୁରୁତ୍ୱପୂର୍ଣ୍ଣ ଫସଲ । ଶୁଷ୍କ ପରିବେଶ, ଉଚ୍ଚ ତାପମାତ୍ରା ଅବସ୍ଥାରେ ଏହାର ଉତ୍ପାଦନ, ସ୍ୱଳ୍ପ ଅବଧି, ସ୍ୱଳ୍ପ ଜଳ ଆବଶ୍ୟକତା, ସ୍ୱଳ୍ପ ଶ୍ରମ ଓ ଖର୍ଚ୍ଚରେ ଉତ୍ପାଦିତ ହେଉଥିବା ଯୋଗୁଁ ଏଗୁଡ଼ିକୁ ବିଶେଷ ପସନ୍ଦ କରାଯାଏ । ପରିବର୍ତ୍ତିତ ଜଳବାୟୁ ଏବଂ ପରିବେଶ ଭାରସାମ୍ୟ ଦୃଷ୍ଟିରୁ ଏଗୁଡ଼ିକର ପ୍ରାଧାନ୍ୟ ଯଥେଷ୍ଟ ରହିଛି ।

ମିଲେଟ୍‌ଗୁଡ଼ିକ ଧାନ ଓ ଗହମ ପରି ଶସ୍ୟଜାତୀୟ ଫସଲ । ମାତ୍ର ଧାନ ଓ ଗହମ ତୁଳନାରେ ଏଥିରେ ପ୍ରଚୁର ପରିମାଣର ସ୍ୱାସ୍ଥ୍ୟ ଉପଯୋଗୀ ପୋଷକତତ୍ତ୍ୱ ଭରି ରହିଛି । ଏଥିପାଇଁ ମିଲେଟ୍‌ଗୁଡ଼ିକୁ ଏକ ସ୍ୱତନ୍ତ୍ର ଶ୍ରେଣୀଭୁକ୍ତ କରାଯାଇଛି ଏବଂ ଏଥିରେ ଥିବା ଗୁଣାତ୍ମକ ମାନ ହେତୁ ଏଗୁଡ଼ିକୁ ପୁଷ୍ଟିଶସ୍ୟରେ ଅନ୍ତର୍ଭୁକ୍ତ କରାଯାଇଛି ।

**ମିଲେଟ୍ସର ପ୍ରକାର ଭେଦ**

ହିନ୍ଦୀରେ ମିଲେଟ୍ସର ଲୋକପ୍ରିୟ ନାମ ହେଉଛି 'ମୋଟା ଅନାଜ' । ଓଡ଼ିଶାରେ ଏହାର ଅର୍ଥ କ୍ଷୁଦ୍ରଶସ୍ୟ ବା ଲଘୁଶସ୍ୟ । ମଞ୍ଜି ବା ଦାନାର ଆକାର ଅନୁସାରେ ମିଲେଟ୍‌ଗୁଡ଼ିକୁ ବୃହତ୍ ମିଲେଟ୍ସ ଏବଂ ଲଘୁ ମିଲେଟ୍ସରେ ବିଭକ୍ତ କରାଯାଇଛି ।

**୧) ବୃହତ୍ ମିଲେଟ୍ସ** (Greater millets)–

କ) ଜୋଆର ବା ଜହ୍ନା (Sorghum / Jowar - *Sorghum bicolor*)

ଖ) ବାଜରା (Bajra / Pearl millet - *Pennisetum glaucum*)

**୨) ଲଘୁ ମିଲେଟ୍ସ** (Minor / Small millets)–

କ) ମାଣ୍ଡିଆ (Ragi / Finger millet – *Eleusine coracana*)

ଖ) ସୁଆଁ (Little millet - *Panicum sumatrense*)

ଗ) କାଙ୍ଗୁ (Foxtail millet - *Setaria italica* )

ଘ) କୋଦ(Kodo millet - *Paspalum Scrobiculatum*)

ଙ) ବିଲସୁଆଁ (Barnyard millet – *Echinochloa frumentacea*)

ଚ) ଚିନା (Proso millet - *Panicum miliaceum*)

**ଓଡ଼ିଶାରେ ମିଲେଟ୍ସର ଗବେଷଣା**

ବହୁ ପୁରାତନ କାଳରୁ ହଜାର ହଜାର ବର୍ଷ ପୂର୍ବରୁ ଓଡ଼ିଶାରେ ବିଶେଷ କରି ଦକ୍ଷିଣାଞ୍ଚଳ ଜିଲ୍ଲାମାନଙ୍କରେ ବର୍ଷା ନିର୍ଭରଶୀଳ ତଥା ପାହାଡ଼ିଆ ଅଞ୍ଚଳମାନଙ୍କରେ

ଆଦିବାସୀମାନଙ୍କ ଦ୍ୱାରା ମିଲେଟ୍ ଚାଷ ହୋଇଆସୁଛି । ଓଡ଼ିଶାର ଜଳବାୟୁରେ ମାଣ୍ଡିଆ ଏବଂ ସୁଆଁ ଚାଷ ବିଶେଷ ଭାବରେ କରାଯାଇଥାଏ । ଏହି ଦୁଇ ମିଲେଟ୍ ଆମର ଖାଦ୍ୟ ବ୍ୟବସ୍ଥା, ସଂସ୍କୃତି ଓ ପରମ୍ପରା ସହ ନିବିଡ଼ ଭାବେ ସଂପୃକ୍ତ । ମାତ୍ର ଧାନ, ଗହମ ପରି ଶସ୍ୟ ଫସଲ ଚାଷ ଉପରେ ଅଧିକ ଗୁରୁତ୍ୱ ଏବଂ ସେହି ଖାଦ୍ୟଶସ୍ୟର ଚାହିଦା ବୃଦ୍ଧି ଯୋଗୁଁ ଓଡ଼ିଶାରେ ମିଲେଟ୍ ଚାଷ ଓ ବ୍ୟବହାର ହ୍ରାସ ପାଇଛି । ଏହି କାରଣରୁ ମିଲେଟ୍ ଫସଲର ଉତ୍ପାଦନ ଏବଂ ବୃଦ୍ଧି ଲକ୍ଷ୍ୟରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଅଧୀନରେ ମିଲେଟ୍ ଉପରେ ଗବେଷଣା ଆରମ୍ଭ ହେଲା । ସତୁରୀ ଦଶକରେ ପ୍ରଥମେ ଉଦ୍ଭିଦ ପ୍ରଜନନ ଓ ଆନୁବଂଶିକୀ ବିଭାଗରେ ଏବଂ ପରେ ୧୯୮୬-୮୭ ମସିହାରେ ବ୍ରହ୍ମପୁରଠାରେ ସର୍ବଭାରତୀୟ ସଂଯୋଜିତ କ୍ଷୁଦ୍ରଶସ୍ୟ ଜାତୀୟ ଫସଲ ଗବେଷଣା ପ୍ରକଳ୍ପ ମାଧ୍ୟମରେ ମାଣ୍ଡିଆ ଏବଂ ସୁଆଁ ଫସଲର ଗବେଷଣା ନିମ୍ନଲିଖିତ ଉଦ୍ଦେଶ୍ୟଗୁଡ଼ିକୁ ନେଇ ଆରମ୍ଭ ହୋଇଥିଲା ।

(କ) ମାଣ୍ଡିଆ ଓ ସୁଆଁରେ ରୋଗପୋକ ସହଣୀ, ଜଳବାୟୁ ଉପଯୋଗୀ ଅଧିକ ଅମଳକ୍ଷମ କିସମ ବିକଶିତ କରିବା ।

(ଖ) ରାଜ୍ୟର ବିଭିନ୍ନ ଅଞ୍ଚଳରୁ ପାରମ୍ପରିକ କିସମ ସଂଗ୍ରହ, ମୂଲ୍ୟାଙ୍କନ, ସଂରକ୍ଷଣ ତଥା କିସମ ବିକାଶ କ୍ଷେତ୍ରରେ ଉପଯୋଗ କରିବା ।

(ଗ) ଓଡ଼ିଶାର ବିଭିନ୍ନ କୃଷି ପରିବେଶ କ୍ଷେତ୍ର ପାଇଁ ଉପଯୁକ୍ତ ଏବଂ ଲାଭଜନକ ଫସଲ ଉତ୍ପାଦନ ଓ ସୁରକ୍ଷା ପ୍ରଯୁକ୍ତିବିଦ୍ୟାର ବିକାଶ କରିବା ।

(ଘ) ଆଗୁଆ ଧାଡ଼ି କ୍ଷେତ୍ର ପ୍ରଦର୍ଶନ ଓ ଆଦିବାସୀ ଉପଯୋଜନା ମାଧ୍ୟମରେ ଗବେଷଣାଲବ୍ଧ ଜ୍ଞାନକୌଶଳର ପ୍ରସାର କରାଇବା ।

(ଙ) ଓଡ଼ିଶାରେ ଚାଷୋପଯୋଗୀ ମାଣ୍ଡିଆ ଓ ସୁଆଁର ବିହନ ଉତ୍ପାଦନ ଏବଂ ଯୋଗାଣ ।

### ଓୟୁଏଟିରୁ ବିକଶିତ ମିଲେଟ୍ କିସମ

ଓୟୁଏଟି ଅଧିନସ୍ଥ ଏବଂ ବ୍ରହ୍ମପୁରଠାରେ ଅବସ୍ଥିତ ସର୍ବଭାରତୀୟ ସଂଯୋଜିତ କ୍ଷୁଦ୍ରଶସ୍ୟ ଜାତୀୟ ଫସଲ, ଗବେଷଣା ପ୍ରକଳ୍ପ ମାଧ୍ୟମରେ ଅଦ୍ୟାବଧି ସର୍ବମୋଟ ୭ଗୋଟି ମାଣ୍ଡିଆ କିସମ ଏବଂ ୬ଗୋଟି ସୁଆଁ କିସମ ବିକଶିତ ହୋଇଅଛି । ନିମ୍ନରେ ସେଗୁଡିକର ବର୍ଣ୍ଣନା କରାଯାଇଛି ।

| କିସମ | ବିକଶିତ ବର୍ଷ | ଅବଧି (ଦିନ) | ହାରାହାରି ଅମଳ (କ୍ୱି./ହେକ୍ଟର) | ଅନୁମୋଦିତ ଋତୁ | ଅନୁମୋଦିତ ଅଞ୍ଚଳ | ବିଶେଷ ଗୁଣ |
|---|---|---|---|---|---|---|
| **ମାଣ୍ଡିଆ କିସମ** | | | | | | |
| ଦିବ୍ୟସିଂହ | ୧୯୭୧ | ୯୦-୧୦୦ | ୧୭.୦ | ଖରିଫ, ରବି | ଓଡ଼ିଶା | ରୋଗପୋକ ସହଣୀ |
| ନୀଳାଚଳ | ୧୯୮୫ | ୧୦୫-୧୧୦ | ୨୫.୦ | ଖରିଫ, ରବି | ଓଡ଼ିଶା | ରୋଗପୋକ ସହଣୀ, ଈଷତ୍ ଧୂସର ରଙ୍ଗର ମଞ୍ଜି |
| ଶୁଭ୍ରା | ୧୯୯୯ | ୧୦୦-୧୦୫ | ୨୧.୫ | ଖରିଫ, ରବି | ଓଡ଼ିଶା | ଧଳା ମଞ୍ଜି, ରୋଗପୋକ ସହଣୀ |
| ଭୈରବୀ | ୧୯୯୯ | ୧୦୫-୧୧୦ | ୨୭.୦ | ଖରିଫ, ରବି | ଓଡ଼ିଶା, କର୍ଣ୍ଣାଟକ ଆନ୍ଧ୍ର, ମଧ୍ୟପ୍ରଦେଶ | ଈଷତ୍ ଲାଲ ରଙ୍ଗ ଗଛ, ଲାଲ ମଞ୍ଜି, ରୋଗପୋକ ସହଣୀ |
| ଚିଲିକା | ୨୦୦୧ | ୧୧୦-୧୧୫ | ୨୬.୦ | ଖରିଫ, ରବି | ଓଡ଼ିଶା, ମଧ୍ୟପ୍ରଦେଶ ଗୁଜରାଟ, ଆନ୍ଧ୍ର, ତାମିଲନାଡୁ | ବିଳମ୍ବ କିସମ, ଅଧିକ ଅମଳକ୍ଷମ, ରୋଗପୋକ ସହଣୀ |
| କାଳୁଆ | ୨୦୧୬ | ୧୧୦-୧୧୫ | ୧୭.୫ | ଖରିଫ, ରବି | ଓଡ଼ିଶା | ରୋଗପୋକ ସହଣୀ |
| ଅର୍ଜୁନ | ୨୦୧୬ | ୧୦୫-୧୧୦ | ୨୬.୦ | ଖରିଫ, ରବି | ଓଡ଼ିଶା, ଆନ୍ଧ୍ର, ତାମିଲନାଡୁ, ଗୁଜରାଟ, ମଧ୍ୟପ୍ରଦେଶ | ଅଧିକ ଅମଳକ୍ଷମ, ରୋଗପୋକ ସହଣୀ |
| **ସୁଆଁ କିସମ** | | | | | | |
| ତାରିଣୀ | ୨୦୦୧ | ୧୦୫-୧୧୫ | ୧୨.୦ | ଖରିଫ | ଓଡ଼ିଶା, ଆନ୍ଧ୍ର ବିହାର, ତାମିଲନାଡୁ | ବିଳମ୍ବ କିସମ, ଅଧିକ ଅମଳକ୍ଷମ, ରୋଗପୋକ ସହଣୀ |
| କୋଲାବ | ୨୦୦୧ | ୭୫-୮୦ | ୧୨.୯ | ଖରିଫ | ଓଡ଼ିଶା, ମଧ୍ୟପ୍ରଦେଶ, ବିହାର ଛତିଶଗଡ଼, କର୍ଣ୍ଣାଟକ | ସଅଳ କିସମ, ରୋଗପୋକ ସହଣୀ |
| ସବର | ୨୦୦୧ | ୭୫-୮୦ | ୧୨.୯ | ଖରିଫ | ଓଡ଼ିଶା, ମଧ୍ୟପ୍ରଦେଶ, ଛତିଶଗଡ଼ | ସଅଳ କିସମ, ରୋଗପୋକ ସହଣୀ |
| ସଭରା | ୨୦୦୯ | ୧୦୦-୧୦୫ | ୧୪.୧ | ଖରିଫ | ଓଡ଼ିଶା, ଛତିଶଗଡ଼, ଗୁଜରାଟ | ବିଳମ୍ବ କିସମ, ଅଧିକ ଅମଳକ୍ଷମ ରୋଗପୋକ ସହଣୀ |

(କ୍ୱି./ହେକ୍ଟର)

| | | | | | | |
|---|---|---|---|---|---|---|
| କଳିଙ୍ଗ ସୁଆଁ-୨୧୭ | ୨୦୨୦ | ୧୧୫–୧୧୭ | ୧୫.୭ | ଖରିଫ୍ | ଓଡ଼ିଶା | ବିଳମ୍ବ କିସମ, ଅଧିକ ଅମଳକ୍ଷମ ରୋଗପୋକ ସହଣୀ |
| କଳିଙ୍ଗ ସୁଆଁ ୧୮ | ୨୦୨୨ | ୯୦-୯୫ | ୧୬.୮ | ଖରିଫ୍ | ଓଡ଼ିଶା, ଅନ୍ଧ୍ର ପ୍ରଦେଶ, କର୍ଣ୍ଣାଟକ | ମଧ୍ୟମ କିସମ, ଅଧିକ ଅମଳକ୍ଷମ ରୋଗପୋକ ସହଣୀ |

ଉପରୋକ୍ତ ବର୍ଣ୍ଣିତ ୭ ଗୋଟି ମାଣ୍ଡିଆ କିସମ ବ୍ୟତୀତ ଚଳିତବର୍ଷ 'ଶ୍ରୀ ରନ୍' ନାମକ ଏକ ମାଣ୍ଡିଆ କିସମ ଓଡ଼ିଶାରେ ଚାଷ ପାଇଁ ବିକଶିତ ହୋଇଛି । ଏହି କିସମଟି ଉଭୟ ଖରିଫ୍ ଓ ରବି ଋତୁରେ ଚାଷ କରାଯାଇପାରିବ । ଏହାର ଅମଳ କ୍ଷମତା ହେକ୍ଟର ପ୍ରତି ୨୩.୫ କ୍ୱିଣ୍ଟାଲ ଏବଂ ଏହା ୧୧୭ ଦିନରେ ଅମଳ ହୋଇଥାଏ । 'ଶ୍ରୀ ରନ୍' ମାଣ୍ଡିଆର ପ୍ରତି କିଲୋଗ୍ରାମ୍ ମଞ୍ଜିରେ ୫୦.୨ ମିଲିଗ୍ରାମ୍ ଲୌହ, ୨୧.୬ ମିଲିଗ୍ରାମ୍ ଦସ୍ତା ରହିଛି, ଯାହା ଅପପୃଷ୍ଟି ରୋକିବାରେ ସହାୟକ ହେବ । ଏତଦ୍‌ବ୍ୟତୀତ ଏହା ମଧ୍ୟ ରୋଗପୋକ ସହଣୀ । ଆଗାମୀ ଦିନରେ ବିହନ ଶୃଙ୍ଖଳ ଜରିଆରେ ଚାଷୀଙ୍କ ପାଖରେ ଏହି କିସମଟି ଖୁବ୍ ଶୀଘ୍ର ପହଞ୍ଚିପାରିବ ।

ସେହିପରି 'ଶ୍ରୀ ପ୍ରଭା' ଏବଂ 'ଶ୍ରୀ ନିଧି' ନାମକ ଦୁଇଟି ମାଣ୍ଡିଆ କିସମ ମଧ୍ୟ ଚଳିତବର୍ଷ ବିକଶିତ ପାଇଁ ଅନୁମୋଦନ ଅପେକ୍ଷାରେ ରହିଛି । 'ଶ୍ରୀ ପ୍ରଭା' କିସମଟି ଓଡ଼ିଶା ବ୍ୟତୀତ ମହାରାଷ୍ଟ୍ର, ଛତିଶଗଡ଼ ଓ ତାମିଲନାଡୁ ରାଜ୍ୟରେ ଚାଷ ପାଇଁ ଉଦ୍ଦିଷ୍ଟ । ଉଭୟ ଖରିଫ୍ ଓ ରବି ଋତୁରେ ଚାଷ କରାଯାଇପାରିବ । ଏହାର ହାରାହାରି ଅମଳ କ୍ଷମତା ହେକ୍ଟର ପ୍ରତି ୨୬.୦ କ୍ୱିାଲ ଏବଂ ଏହା ୧୧୩ ଦିନରେ ଅମଳ ହୋଇଥାଏ । ଉକ୍ତ କିସମଟି ପତ୍ରପୋଡ଼ା, ପତ୍ରଦାଗ ରୋଗ ଏବଂ କାଣ୍ଡବିନ୍ଧା ପୋକ ସହଣୀ । ଏହି କିସମରେ ମଧ୍ୟ ଅଧିକ ଲୌହ, ଦସ୍ତା ଓ କାଲସିୟମ୍ ରହିଛି । ସେହିପରି 'ଶ୍ରୀ ନିଧି' ମାଣ୍ଡିଆ କିସମଟି ଓଡ଼ିଶାରେ ଉଭୟ ଖରିଫ୍ ଓ ରବି ଋତୁରେ ଚାଷ ପାଇଁ ପ୍ରଯୁଜ୍ୟ । ଏହି କିସମଟି ବିଳମ୍ବରେ ଅର୍ଥାତ୍ ୧୨୪ ଦିନରେ ଅମଳ ହୋଇଥାଏ । ଏହାର ଅମଳ କ୍ଷମତା ହେକ୍ଟର ପିଛା ୨୫.୨ କ୍ୱିଣ୍ଟାଲ । 'ଶ୍ରୀ ନିଧି' କିସମଟି ରୋଗପୋକ ସହଣୀ ସହିତ ଏଥିରେ ଶ୍ରୀରନ୍ ଏବଂ ଶ୍ରୀପ୍ରଭା କିସମ ଅପେକ୍ଷା ଅଧିକ ମାତ୍ରାରେ ଦସ୍ତା, ଲୌହ, କାଲସିୟମ୍ ଏବଂ ପ୍ରୋଟିନ୍ ରହିଛି, ଯାହା ଅପପୁଷ୍ଟି ରୋକିବାରେ ସହାୟକ ହୋଇଥାଏ ।

ଚଳିତବର୍ଷ ସାରା ରାଜ୍ୟ ଏବଂ ଦେଶରେ 'ଅନ୍ତର୍ଜାତୀୟ ମିଲେଟ୍ ବର୍ଷ ୨୦୨୩' ପାଳନ କରାଯାଉଛି । ଏହି ଅବସରରେ ଚଳିତବର୍ଷ ବିକଶିତ ହୋଇଥିବା ସୁଆଁ କିସମ 'କଳିଙ୍ଗ ସୁଆଁ ୧୮', ମାଣ୍ଡିଆ କିସମ 'ଶ୍ରୀ ରନ୍' ଏବଂ ବିକଶିତ ପାଇଁ ଅନୁମୋଦନ ଅପେକ୍ଷାରେ ଥିବା ଦୁଇଗୋଟି ମାଣ୍ଡିଆ କିସମ 'ଶ୍ରୀ ପ୍ରଭା' ଏବଂ 'ଶ୍ରୀ ନିଧି', ଓୟୁଏଟି ତଥା ଆମ ରାଜ୍ୟ ପାଇଁ ଏକ ଗୌରବର କଥା । ଓଡ଼ିଶାରେ ମାଣ୍ଡିଆ ଏବଂ ସୁଆଁ ବହୁଳ ଭାବରେ ଚାଷ କରାଯାଇଥାଏ । ପୂର୍ବରୁ ଓୟୁଏଟିରୁ ବିକଶିତ ହୋଇଥିବା ମାଣ୍ଡିଆ ଏବଂ ସୁଆଁ କିସମଗୁଡ଼ିକୁ ଓଡ଼ିଶା ଚାଷୀମାନଙ୍କ ଦ୍ୱାରା ଚାଷ କରାଯାଉଛି । ଅନ୍ତର୍ଜାତୀୟ ମିଲେଟ୍ ବର୍ଷ ଅବସରରେ ବିକଶିତ ହେଉଥିବା ମାଣ୍ଡିଆ ଓ ସୁଆଁ କିସମଗୁଡ଼ିକ ଖୁବ୍ ଶୀଘ୍ର ଚାଷୀମାନଙ୍କ ପାଖରେ ପହଞ୍ଚାଇବାର ପ୍ରୟାସ ହେଉଛି । ଆଗାମୀ ଦିନରେ ଏହି ଅଧିକ ଅମଳକ୍ଷମ, ରୋଗପୋକ ସହଣୀ ଏବଂ ପୁଷ୍ଟିରେ ଭରପୂର କିସମଗୁଡ଼ିକ ଚାଷ କରିବା ଦ୍ୱାରା ମିଲେଟ୍ ଉତ୍ପାଦନରେ ନିଶ୍ଚୟ ଉନ୍ନତି ଆସିବା ସଙ୍ଗେ ସଙ୍ଗେ ଅପପୁଷ୍ଟି ରୋକିବାରେ ଯେ ସହାୟକ ହୋଇପାରିବ, ଏଥିରେ ସନ୍ଦେହ ନାହିଁ ।

ବରିଷ୍ଠ ବୈଜ୍ଞାନିକ
ଓଡିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

❖ ❖ ❖

# ଶ୍ରୀ ଅନ୍ନ ଚାଷ କୌଶଳ

ପ୍ରଫେସର ଆର୍ଯ୍ୟକୁମାର ବିଶ୍ୱମୋହନ ମହାପାତ୍ର
ପ୍ରଫେସର ସୁଶାନ୍ତ କୁମାର ସ୍ୱାଇଁ

 କ୍ଷୁଦ୍ରଶସ୍ୟ ଫସଲ ଏକ ଗୁରୁତ୍ୱପୂର୍ଣ୍ଣ ଓ ଶୁଷ୍କାଞ୍ଚଳ ଉପଯୋଗୀ ଫସଲ ଅଟେ । ଏଗୁଡ଼ିକ ହେଉଛି ମାଣ୍ଡିଆ, ସୁଆଁ, ଚିନା, କାଙ୍ଗୁ ବିଲସୁଆଁ ଓ କୋଦ । ଧାନ, ଗହମ ଓ ମକା ତୁଳନାରେ କ୍ଷୁଦ୍ରଶସ୍ୟ ଫସଲ କମ୍ ସବୁଜଗୃହ ବାଷ୍ପ ନିର୍ଗମନ କରିଥାନ୍ତି । ଏଗୁଡ଼ିକର ଅଧିକ ଜୈବ ବିବିଧତା, ସ୍ୱଳ୍ପ ଅବଧି, ପରିବର୍ତ୍ତିତ ପାଣିପାଗକୁ ସହ୍ୟ କରିପାରୁଥିବା ପ୍ରତିକୂଳ ପରିବେଶ ମଧ୍ୟରେ ଭଲ ଅମଳ ଦେଉଥିବାରୁ ଆଗାମୀ ଦିନରେ କୃଷି ପାଇଁ ଏହା ଉପଯୋଗୀ ଫସଲ । ଅପେକ୍ଷାକୃତ ଅନୁର୍ବର ମୃତ୍ତିକା, ଅଯତ୍ନରେ ଚାଷ, ବିନା ଜଳସେଚନରେ ମଧ୍ୟ ଏହି ଫସଲରୁ ଭଲ ଅମଳ ମିଳିଥାଏ । ବିବିଧ ଖଣିଜ ଲବଣ ଯଥା: ୧୦୦ ଗ୍ରାମ୍ ପ୍ରତି କାଲସିୟମ୍ ୩.୬୪ ମି.ଗ୍ରା., ଲୌହ ୪-୬ ମି.ଗ୍ରା., ପ୍ରଚୁର ଖାଦ୍ୟତନ୍ତୁ(୧୦-୧୨%)ରେ ଏଗୁଡ଼ିକ ଭରପୁର ଥାଏ । ଏହା ଏକ ସର୍ବଗୁଣଯୁକ୍ତ (ଶ୍ରୀ) ହୋଇଥିବାରୁ ଏହାକୁ ଯଥାର୍ଥରେ ଶ୍ରୀ ଅନ୍ନ କୁହାଯାଇଛି ।

ଏହି ଫସଲର ଇଂରାଜୀ ନାମ ହେଉଛି ମାଣ୍ଡିଆ (Finger millet), ସୁଆଁ (Little millet), ଚିନା (Proso millet), କାଙ୍ଗୁ (Foxtail millet), ବିଲସୁଆଁ (Barnyard millet) ଓ କୋଦ (Kodo millet) ।

ଏହି ଫସଲଗୁଡ଼ିକ ଆମ ରାଜ୍ୟର ପ୍ରାୟ ପ୍ରତ୍ୟେକ ଜିଲ୍ଲାରେ ଚାଷ ହୁଏ । ଉତ୍ପାଦନ କ୍ଷେତ୍ରରେ ଅନେକ ପ୍ରତିବନ୍ଧକ ରହିଛି । ଯେପରିକି ଋତୁ ଏବଂ ଅଞ୍ଚଳ ନିର୍ଦ୍ଦିଷ୍ଟ



ଅଧିକ ଅମଳକ୍ଷମ ରୋଗପୋକ ସହଣୀ ଉନ୍ନତ କିସମର ବ୍ୟବହାର ଆଶାନୁରୂପ ଯଥେଷ୍ଟ ନୁହେଁ ।

ପନିପରିବା, କପା, ଚିନାବାଦାମ, ମକା ଇତ୍ୟାଦି ଆର୍ଥକରୀ ଫସଲ ଚାଷ କରି ଅଧିକ ଲାଭବାନ ହେଉଥିବାରୁ କ୍ଷୁଦ୍ରଶସ୍ୟ ଫସଲର ଚାଷ ବାଧାପ୍ରାପ୍ତ ହେଉଛି ।

ଉତ୍ପାଦନ ବୃଦ୍ଧି କରିବା ପାଇଁ ଚାଷୀମାନେ ଉନ୍ନତ ଚାଷ ପ୍ରଣାଳୀ ଯଥା: ଅଧିକ ଅମଳକ୍ଷମ, ରୋଗପୋକ ସହଣୀ ଶକ୍ତି ଥିବା ଉନ୍ନତ ବିହନର ବ୍ୟବହାର, ହରଡ଼ ଓ ଚିନାବାଦାମ ଚାଷରେ ଅନ୍ତଃଫସଲ ଭାବେ କ୍ଷୁଦ୍ରଶସ୍ୟ ଫସଲର ଚାଷ, ଧାନ ଫସଲ ପୂର୍ବରୁ ସ୍ୱଳ୍ପ ଅବଧିର ମାଣ୍ଡିଆ ଚାଷ, ରବି ଋତୁରେ ଜଳସେଚିତ ଜମି ଚକଡ଼ାର ତଳମୁଣ୍ଡରେ ଧାନ ଚାଷ ନକରି ମାଣ୍ଡିଆ ଚାଷ ଏବଂ ମାଣ୍ଡିଆର ରୁଆ ପଦ୍ଧତି ଅବଲମ୍ବନ କରିବା ଆବଶ୍ୟକ । ମୂଲ୍ୟଯୁକ୍ତ ଦ୍ରବ୍ୟର ପ୍ରସ୍ତୁତି ଏବଂ ବଜାର ଉପଯୋଗୀ

ଖାଦ୍ୟଦ୍ରବ୍ୟ ପ୍ରସ୍ତୁତି, ଗବେଷଣା ଓ ସଂପ୍ରସାରଣ ଦ୍ୱାରା ଏହି ସ୍ୱାସ୍ଥ୍ୟ ଉପଯୋଗୀ ଫସଲର ପ୍ରସାର ଏବଂ ଜନସାଧାରଣ ଏହାକୁ ଦୈନିକ ଖାଦ୍ୟରେ ଅନ୍ତର୍ଭୁକ୍ତ କରିବା ଦ୍ୱାରା ଚାଷୀଭାଇମାନେ ଲାଭବାନ ହୋଇପାରିବେ ।

**ଉତ୍ପାଦନ କୌଶଳ ଓ ଜଳବାୟୁ**

ମାଣ୍ଡିଆ ଚାଷ ପାଇଁ ଉଷ୍ଣ ଜଳବାୟୁ ଅନୁକୂଳ । ଏହାକୁ ଉଭୟ ବର୍ଷା ଋତୁ ଏବଂ ଗ୍ରୀଷ୍ମ ଋତୁରେ ଚାଷ କରାଯାଇପାରିବ । କିନ୍ତୁ ଗ୍ରୀଷ୍ମ ଋତୁରେ ଏହାର ଉତ୍ପାଦନ ବର୍ଷାଋତୁ ଅପେକ୍ଷା ଅଧିକ । ତାପମାତ୍ରା ୨୦ଡିଗ୍ରୀ ସେଲ୍‌ସିୟସ୍‌ରୁ ଅଧିକ ରହିଲେ ଏହା ବର୍ଷସାରା ଚାଷ କରାଯାଇପାରିବ । ଏହା ବାର୍ଷିକ ୫୫୦ ରୁ ୧୨୫୦ ମିଲିମିଟର ବର୍ଷା ଆବଶ୍ୟକ କରେ ଏବଂ ଏହା ସମୁଦ୍ର ପତ୍ତନରୁ ୨୦୦ ମିଟର ଉଚ୍ଚତା ପର୍ଯ୍ୟନ୍ତ ଚାଷ ହୋଇପାରିବ । ସୁଆଁ, କାଙ୍ଗୁ, ବିଲସୁଆଁ ଏବଂ କୋଦ ଫସଲ ଉପରୋକ୍ତ ଜଳବାୟୁରେ ଭଲ ବଢ଼େ । ଏହାଠାରୁ କମ୍ ବୃଷ୍ଟିପାତ, ଅନିଶ୍ଚିତ ବୃଷ୍ଟିପାତ ଅଞ୍ଚଳରେ ମରୁଡ଼ି ପଡୁଥିବା ଅଞ୍ଚଳରେ କାଙ୍ଗୁ ଓ ଚିନା ଫସଲ ଚାଷ କରାଯାଇପାରିବ ।

**ମୃତ୍ତିକା**

ଖାଲୁଆ, ସନ୍ତସନ୍ତିଆ ଓ ଅଧିକ ପାଣି ଜମୁଥିବା ଅଞ୍ଚଳ ମାଣ୍ଡିଆ ଫସଲ ପାଇଁ ଅନୁକୂଳ ନୁହେଁ । ସମତଳ, ଉଚ୍ଚ, ଢାଲୁ, ନିଗିଡ଼ା ଦୋରସା, ମଟାଳ ଦୋରସା ଓ ଉର୍ବର ମାଟି ଏହା ପାଇଁ ଉପଯୁକ୍ତ । ଏହା ଅତି ଅମ୍ଳ କିମ୍ବା କ୍ଷାରୀ ମାଟିରେ ଭଲ ହୋଇ ନଥାଏ । ମାଟିର ଅମ୍ଳତା ୬-୭ ମଧ୍ୟରେ ଥିଲେ ଭଲ । ଏହି ଫସଲ ସାମାନ୍ୟ ଅମ୍ଳ କିମ୍ବା କ୍ଷାରୀ ସହିପାରେ । ଉର୍ବର ମଟାଳ ମାଟିରେ, ଆର୍ଦ୍ର ଭୂମିରେ ଚିନା ଫସଲ ଭଲ ବଢ଼େ । ଏହା ମଧ୍ୟ ବାଲିଆ ମାଟିରେ ଭଲ ବଢ଼େ । ଅନୁର୍ବର ଏବଂ ଶୁଷ୍କ ଜମିରେ ସୁଆଁ, ବିଲସୁଆଁ ଚାଷ କରାଯାଇପାରିବ ।

ଚାଷ ସମୟକୁ ଦୃଷ୍ଟିରେ ରଖି ମାଣ୍ଡିଆକୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇଛି । ସେଗୁଡ଼ିକ ହେଲା-

୧. ଚୁଡ଼ା ମାଣ୍ଡିଆ ବା କାଦୁଆ ମାଣ୍ଡିଆ- ଏହା ଜୁନ୍ ମାସରେ ବୁଣା କିମ୍ବା ରୁଆଯାଏ । ଏହାର ଅବଧି ସବୁ ମାଣ୍ଡିଆଠାରୁ ବେଶୀ ।

୨. କାକିରି ମାଣ୍ଡିଆ - ଏହା ସେପ୍ଟେମ୍ବର କିମ୍ବା ଅକ୍ଟୋବର ମାସରେ ରୁଆଯାଏ ।

୩. ଖରାଟିଆ ମାଣ୍ଡିଆ - ଏହା ଜାନୁଆରୀ କିମ୍ବା ଫେବୃଆରୀ ମାସରେ ରୁଆଯାଏ ।

**ଜମି ପ୍ରସ୍ତୁତି**

ଖରାଦିନେ ଜମିକୁ ୨/୩ ଓଡ଼ ଚାଷ କରିବା ଆବଶ୍ୟକ । ଶେଷ ଓଡ଼ ଚାଷ ପୂର୍ବରୁ ହେକ୍ଟର ପ୍ରତି ୫ ଟନ୍ ସଢ଼ା ଗୋବର ଖତ ବା କମ୍ପୋଷ୍ଟ ପ୍ରୟୋଗ କରି ମାଟିରେ ଭଲ ଭାବେ ମିଶାଇ ଦିଆଯାଏ । ମଞ୍ଜିଗୁଡ଼ିକ କ୍ଷୁଦ୍ର ହୋଇଥିବାରୁ ମାଟି ଗଭୀର ଓ ଫସ୍‌ଫସିଆ ହେଲେ ବିହନ ଅଧିକ ଗଭୀରକୁ ଚାଲିଯାଇ ଅଙ୍କୁରୋଦ୍‌ଗମରେ ବାଧା ସୃଷ୍ଟି କରେ । ତେଣୁ, ମଇ ଦେଇ ମାଟିକୁ ଚାପି ଦେଇ ଶେଷ ଓଡ଼ ଚାଷ ହାଲ୍‌କା କଲେ ଭଲ । ଉଇ, ପିମ୍ପୁଡ଼ି ଆଦି ବିହନକୁ ନଷ୍ଟ କରି ଦିଅନ୍ତି । ଏଥିପାଇଁ ହେକ୍ଟର ପ୍ରତି ୨୫ କି.ଗ୍ରା. କ୍ଲୋର୍‌ପାଇରିଫସ୍ ଗୁଣ୍ଡ ଶେଷ ଓଡ଼ ଚାଷ ସମୟରେ ମାଟିରେ ମିଶାଇ ଦେବା ଆବଶ୍ୟକ ।

**ବିହନ ବୁଣା**

ମାଣ୍ଡିଆ ଫସଲକୁ ବୁଣା ଯାଇପାରେ କିମ୍ବା ତଳି ଉତାରି ରୁଆଯାଏ । ବୁଣା ଠାରୁ ରୁଆ ଫସଲରୁ ଅଧିକ ଅମଳ ମିଳେ । ଛଟାବୁଣା ଅପେକ୍ଷା ଧାଡ଼ି ବୁଣାରେ ଅଧିକ ଅମଳ ମିଳିଥାଏ । ଧାଡ଼ିକୁ ଧାଡ଼ି ସଅଳ କିସମ ମାଣ୍ଡିଆକୁ ୧୫ ସେ.ମି., ମଧ୍ୟମ ଓ ବିଳମ୍ବ କିସମକୁ ୨୨.୫-୨୫ ସେ.ମି. ବ୍ୟବଧାନରେ ୩-୪ ସେ.ମି. ଗଭୀରରେ ବୁଣାଯାଏ । ଧାଡ଼ିବୁଣାରେ ହେକ୍ଟର ପ୍ରତି ୬-୮ କି.ଗ୍ରା. ବିହନ ଦରକାର ହୁଏ । ରୋଇବା ପାଇଁ ହେକ୍ଟରକୁ ୪-୫ କି.ଗ୍ରା. ବିହନ ଆବଶ୍ୟକ ।

କାଙ୍ଗୁ ଓ ଚିନା ଫସଲକୁ ଧାଡ଼ିକୁ ଧାଡ଼ି ୨୫ ସେ.ମି. ବ୍ୟବଧାନରେ ବୁଣାଯାଏ । ଏଥିପାଇଁ ହେକ୍ଟର ପ୍ରତି

୮-୧୦ କି.ଗ୍ରା. ବିହନ ଆବଶ୍ୟକ ହୁଏ । କୋଦ, ସୁଆଁ, ବିଲସୁଆଁ ଫସଲକୁ ଧାଡ଼ିକୁ ଧାଡ଼ି ୨୨.୫-୨୫ ସେ.ମି. ବ୍ୟବଧାନରେ ବୁଣାଯାଏ । ଏଥିପାଇଁ ହେକ୍ଟର ପ୍ରତି ୮-୧୦ କି.ଗ୍ରା. ବିହନ ଆବଶ୍ୟକ ହୁଏ ।

### ବିହନ ବିଶୋଧନ

ବୁଣିବା ପୂର୍ବରୁ ୧ କି.ଗ୍ରା. ବିହନ ପ୍ରତି ୨ ଗ୍ରାମ୍ କାର୍ବେଣ୍ଡାଜିମ୍ କିମ୍ବା ୫ ଗ୍ରାମ୍ ଟ୍ରାଇକୋଡର୍ମା କିମ୍ବା ୬ ଗ୍ରାମ୍ ସୁଡ଼ୋମୋନାସ୍ ଫ୍ଲୁରେସେନ୍ସକୁ ଭଲ ଭାବେ ଗୋଳାଇ ବିହନକୁ ବିଶୋଧନ କରାଯାଏ । ଏହା ରୋଗ ସଂକ୍ରମଣରୁ ରକ୍ଷା କରେ ।

### ବିହନକୁ ଶକ୍ତ କରିବା ପ୍ରଣାଳୀ

ସ୍ୱଳ୍ପ ବର୍ଷା ହେବା ଅଞ୍ଚଳରେ ମାଟିରେ ସାମାନ୍ୟ ଆର୍ଦ୍ରତା ଯୋଗୁଁ ବୁଣା ବିହନରୁ ଅଳ୍ପ ଗଜା ହୁଏ । ଏହି ପରିସ୍ଥିତିରେ ବିହନକୁ ଶକ୍ତ କରି ବୁଣିଲେ ଗଜା ହେବାର ଉନ୍ନତି ସହ ଜମିରେ ଗଛ ସଂଖ୍ୟାରେ ଉନ୍ନତି ଆସିଥାଏ ଓ ଏହାର ମରୁଡ଼ି ସହଣୀ ଶକ୍ତି ବଢ଼ିଥାଏ । ଏଥିପାଇଁ -

୧. ବିହନକୁ ୫ଘଣ୍ଟା ପାଣିରେ ଭିଜାଇ ରଖାଯାଏ । ୧ କି.ଗ୍ରା. ବିହନ ପାଇ ୧ ଲିଟର ପାଣି ଦରକାର ।

୨. ୫ଘଣ୍ଟା ପରେ ପାଣିକୁ ନିଗାଡ଼ି ବିହନକୁ ଓଦା କନା ମୁଣିରେ ଦୁଇଦିନ ଧରି ଭଲ ଭାବେ ବାନ୍ଧି ରଖିବା ଦରକାର ।

୩. ଗଜା ହେବା ମଞ୍ଜିଗୁଡ଼ିକୁ ଓଦା କନା ମୁଣିରୁ ବାହାର କରି ଛାଇରେ ଶୁଖିଲା କନା ଉପରେ ଦୁଇଦିନ ଧରି ଶୁଖାଇ ଦିଆଯାଏ ।

୪. ଉପରୋକ୍ତ ପ୍ରଣାଳୀରେ କଠିନ ହୋଇଥିବା ବିହନ ବୁଣିବା ପାଇଁ ବ୍ୟବହାର କରାଯାଏ । ବିହନକୁ ବିଶୋଧନ କରି ଜୀବାଣୁ ସାରରେ ଉପଚାର କରି ଜମିରେ ବୁଣାଯାଏ ।

### ବିହନ ଉପଚାର

ବିହନ ବିଶୋଧନ କରିବାର ୭ ଦିନ ପରେ ବିଶୋଧିତ ବିହନକୁ ଆଜୋସ୍ପିରିଲମ୍ କଲ୍‌ଚର୍ ୨୫ ଗ୍ରାମ୍‌କୁ କି.ଗ୍ରା. ବିହନ ପ୍ରତି ଗୋଳାଇ ଉପଚାର କରାଯାଏ । ଏହାକୁ ଛାଇରେ ଶୁଖାଇ ଉପରବେଳା ଜମିରେ ବୁଣାଯାଏ ।

### ତଳି ପ୍ରସ୍ତୁତି ପ୍ରଣାଳୀ

ଏକ ହେକ୍ଟର ଜମିରେ ରୋଇବା ପାଇଁ ୧୨.୫ ଡେସିମିଲ୍ ଜମି (୫୦୦ ବର୍ଗମିଟର ତଳିଘରା) ଓ ୬-୮ କି.ଗ୍ରା. ବିହନ ଆବଶ୍ୟକ । ମାଟିକୁ ଭଲ ଭାବେ ଚାଷ କରି ୨୦-୨୫ ଝୁଡ଼ି ସଢ଼ା ଗୋବର ଖତ ପକାଇ ମାଟିରେ ମିଶାଇ ଦିଆଯାଏ । ବିହନକୁ ୨-୩ ସେ.ମି. ଗଭୀରରେ ଧାଡ଼ିରେ ବୁଣାଯାଏ । ପିମ୍ପୁଡ଼ି ଓ ଉଇ ଦାଉରୁ ରକ୍ଷା କରିବା ପାଇଁ ୧ କି.ଗ୍ରା. କ୍ଲୋର୍‌ପାଇରିଫସ୍ ଗୁଣ୍ଡକୁ ମାଟିରେ ମିଶାଇ ବିହନ ବୁଣନ୍ତୁ । ବୁଣିବା ସମୟରେ ୧ ବର୍ଗମିଟର ପରିମିତ ତଳିଘରାରେ ୧୦ ଗ୍ରାମ୍ ଯବକ୍ଷାରଜାନ (୨୨ ଗ୍ରାମ୍ ୟୁରିଆ) ଓ ୧୦ଗ୍ରାମ୍ ଫସ୍‌ଫରସ୍ (୬୦ ଗ୍ରାମ୍ ସିଙ୍ଗଲ୍ ସୁପର ଫସ୍‌ଫେଟ୍) ପ୍ରୟୋଗ କରିବା ଉଚିତ୍ । ଏକ ହେକ୍ଟର ଜମି ପାଇଁ ତଳିଘରାରେ ସମୁଦାୟ ୧୧ କି.ଗ୍ରା. ୟୁରିଆ ଏବଂ ୩୦ କି.ଗ୍ରା. ସିଙ୍ଗଲ ସୁପର ଫସ୍‌ଫେଟ୍‌କୁ ମାଟିରେ ମିଶାଇ ଦେବା ଦରକାର । ମଝିରେ ମଝିରେ ପୋକ ଓ ରୋଗ ନିୟନ୍ତ୍ରଣ କରିବା ପାଇଁ ଉପଯୁକ୍ତ କୀଟନାଶକ ବା କବକନାଶକ ସିଞ୍ଚନ କରିବା ଉଚିତ୍ ।

### ରୁଆ ପ୍ରଣାଳୀ

ତଳିଘରାରେ ବିହନ ବୁଣିବାର ୨୫-୨୮ ଦିନ ପରେ ମଧ୍ୟମ ଓ ବିଳମ୍ବ କିସମ ତଳିଗୁଡ଼ିକୁ ଧାଡ଼ିକୁ ଧାଡ଼ି ୨୫ ସେ.ମି. ଓ ଗଛକୁ ଗଛ ୧୦ ସେ.ମି. ବ୍ୟବଧାନରେ ରୁଆଯାଏ । ବୁଦା ପ୍ରତି ୨ଟି ତଳି ରଖିବା ଦରକାର । ସଅଳ କିସମ ତଳି ୨୧ ଦିନର ହୋଇଗଲେ ୧୫ ସେ.ମି. ରୁ ୧୦ ସେ.ମି. ବ୍ୟବଧାନରେ ରୁଆଯାଏ । ବର୍ଗମିଟର ପ୍ରତି ମଧ୍ୟମ ଓ ବିଳମ୍ବ କିସମର ୪୪ଟି ଓ ସଅଳ କିସମର ୬୬ଟି ଗଛ ରହିଲେ ଭଲ ଅମଳ ମିଳିଥାଏ । ରୋଇବା ପୂର୍ବରୁ ମାଟିକୁ କାଦୁଅ କରାଯାଏ । ଝିପିଝିପି ବର୍ଷା ହେଉଥିବା ସମୟରେ ରୁଆ କାମ

କରାଯାଏ । ତଳିକୁ ୫ ସେ.ମି. ଗଭୀରରେ ରୋଇବା ଆବଶ୍ୟକ ।

**ବୁଣା ଓ ରୋଇବା ସମୟ**

ଖରିଫ୍ ଋତୁରେ ଜୁନ୍ ୧୦ରୁ ଜୁଲାଇ ୧୦ ତାରିଖ ମଧ୍ୟରେ ବୁଣା କିମ୍ବା ତଳିଘରା ପ୍ରସ୍ତୁତ କରାଯାଇ ଜୁଲାଇ ମାସ ମଧ୍ୟରେ ରୁଆଯାଏ । ଗ୍ରୀଷ୍ମ ଋତୁରେ ଡିସେମ୍ବର ୨୦ରୁ ଜାନୁଆରୀ ମାସ ଶେଷ ପର୍ଯ୍ୟନ୍ତ ତଳିଘରା କରାଯାଏ ଓ ଜାନୁଆରୀରୁ ଫେବୃଆରୀ ମାସ ମଧ୍ୟରେ ରୁଆ କାମ ସାରିବା ଭଲ । ରବି ଋତୁରେ ସେପ୍ଟେମ୍ବର ଶେଷ ସପ୍ତାହରୁ ଅକ୍ଟୋବର ଦ୍ୱିତୀୟ ସପ୍ତାହ ମଧ୍ୟରେ ରୁଆ କାମ ସାରି ଦେଲେ ଭଲ ।

**ଖତସାର ପରିଚାଳନା**

ମୃତ୍ତିକା ପରୀକ୍ଷା କରି ମାଟିର ଉର୍ବରତା ଅନୁଯାୟୀ ଖତ ଓ ସାର ପ୍ରୟୋଗ କରାଯାଏ । ହେକ୍ଟର ପ୍ରତି ୫ ଟନ୍ ସଢ଼ା କମ୍ପୋଷ୍ଟ ଖତକୁ ଶେଷ ଓଡ଼ ଚାଷ ସମୟରେ ମାଟିରେ ମିଶାଇ ଦିଅନ୍ତୁ । ମାଣ୍ଡିଆ ତଳିକୁ ଉପାଡ଼ିବା ପରେ ଜୀବାଣୁସାର ଦ୍ରବଣ ଯଥା- ୨୦୦ ଗ୍ରାମ୍ ଆଜୋସ୍ପିରିଲମ୍ ଓ ୨୦୦ ଗ୍ରାମ୍ ଫସ୍‌ଫୋବ୍ୟାକ୍ଟିରନ୍‌କୁ ପ୍ରତି ୧୦ଲିଟର ପାଣିରେ ଗୋଳାଇ ଚେରକୁ ୨ଘଣ୍ଟା ବୁଡ଼ାଇବା ପରେ ରୋଇବା ଦରକାର । ସଅଳ କିସମ ମାଣ୍ଡିଆର ବୁଣା ଫସଲରେ ଯବକ୍ଷାରଜାନ: ଫସ୍‌ଫରସ୍: ପଟାସ୍ ପରିମାଣ ୪୦:୨୦:୨୦ ଏବଂ ରୁଆ ଫସଲରେ ୫୦:୨୫:୨୫ କି.ଗ୍ରା./ହେକ୍ଟର ପ୍ରୟୋଗ କରାଯାଏ । ମଧ୍ୟମ ଓ ବିଳମ୍ବ କିସମ ମାଣ୍ଡିଆ ବୁଣା ଫସଲ ପାଇଁ ୫୦:୨୫:୨୫ ଓ ରୁଆ ଫସଲ ପାଇଁ ୬୦:୩୦:୩୦ କି.ଗ୍ରା. ଯବକ୍ଷାରଜାନ:ଫସ୍‌ଫରସ୍:ପଟାସ ସାର କି.ଗ୍ରା./ ହେକ୍ଟର ପ୍ରୟୋଗ କରାଯାଏ ।

ବୁଣା ଫସଲରେ ବୁଣିବା ଆଗରୁ ସମସ୍ତ ଫସ୍‌ଫରସ୍ ଓ ପଟାସ୍ ସହ ଏକ ଚତୁର୍ଥାଂଶ ଯବକ୍ଷାରଜାନ ସାର ପ୍ରୟୋଗ କରିବା ଦରକାର । ଫସଲ ୨୦-୨୧ ଦିନର ହେଲେ କୋଡ଼ାଖୁସା କରି ଘାସ ବାଛି ଅର୍ଦ୍ଧେକ ଯବକ୍ଷାରଜାନ ସାର ଶୀର୍ଷ ସାର ରୂପେ ପ୍ରୟୋଗ କରିବା ଉଚିତ୍ । ଅବଶିଷ୍ଟ ଏକ ଚତୁର୍ଥାଂଶ ଯବକ୍ଷାରଜାନ ସାର ବୁଣିବାର ୩୫-୪୦ ଦିନ ପରେ ଘାସ ବାଛିବା ପରେ ପ୍ରୟୋଗ କରିବା ଉଚିତ୍ । ରୁଆ ଫସଲରେ ତଳି ରୋଇବା ପୂର୍ବରୁ ସମସ୍ତ ଫସ୍‌ଫରସ୍, ପଟାସ୍ ଓ ଅଧା ଯବକ୍ଷାରଜାନ ସାର ଜମିରେ ପ୍ରୟୋଗ କରି ତଳି ରୋଇବା ଦରକାର । ଅବଶିଷ୍ଟ ଅଧା ଯବକ୍ଷାରଜାନ ସାରକୁ ରୋଇବାର ୨୦-୨୧ ଦିନ ପରେ କୋଡ଼ାଖୁସା କରି ଘାସ ବାଛି ପ୍ରୟୋଗ କରାଯାଏ ।

ସୁଆଁ, ଚିନା, କାଙ୍ଗୁ, ବିଲ ସୁଆଁ ଓ କୋଦ ଫସଲ ପାଇଁ ହେକ୍ଟର ପ୍ରତି ୪୦ କି.ଗ୍ରା. ଯବକ୍ଷାରଜାନ ଓ ୨୦ କି.ଗ୍ରା. ଫସ୍‌ଫରସ୍ ସାର ଆବଶ୍ୟକ । ମଞ୍ଜି ବୁଣିବା ପୂର୍ବରୁ ଶେଷଓଡ଼ ଚାଷ ସମୟରେ ଏକ ଚତୁର୍ଥାଂଶ ଯବକ୍ଷାରଜାନ ସାର ଓ ସମସ୍ତ ଫସ୍‌ଫରସ୍ ସାରକୁ ପ୍ରୟୋଗ କରାଯାଏ । ଅବଶିଷ୍ଟ ତିନି ଚତୁର୍ଥାଂଶ ଯବକ୍ଷାରଜାନ ସାରକୁ ୨୦-୨୧ ଦିନ ପରେ କୋଡ଼ାଖୁସା କରି ଘାସ ବାଛି ପ୍ରୟୋଗ କରାଯାଏ ।

**ଅନ୍ତଃଚାଷ**

ବୁଣା ବା ରୁଆ ଫସଲ ୨୦ ଦିନରେ ପ୍ରଥମ ଓ ଏହାର ୧୫-୨୦ ଦିନ ପରେ ଦ୍ୱିତୀୟ କୋଡ଼ାଖୁସା କରି ଘାସ ବାଛି ଦିଆଯାଏ । ଫସଲ ୮-୧୦ ଦିନର ହୋଇଗଲେ ବର୍ଗମିଟର ପ୍ରତି ଆବଶ୍ୟକ ଗଛ ରଖି ଅବଶିଷ୍ଟ ଗଛକୁ ଉପାଡ଼ି ଦିଆଯାଏ ।

ବୁଣା ଫସଲରେ ବାସାଲିନ୍ (୪୮ ଇ.ସି.) ବୁଣିବାର ୧-୨ ଦିନ ମଧ୍ୟରେ ହେକ୍ଟର ପ୍ରତି ୧.୬ କି.ଗ୍ରା./୫୦୦ ଲିଟର ପାଣିରେ କିମ୍ବା ୨୫ କି.ଗ୍ରା. ବାଲିରେ ମିଶାଇ ସିଞ୍ଚନ କଲେ ଘାସ ଦମନ ହୁଏ କିମ୍ବା ଆଇସୋପ୍ରୋଟ୍ୟୁରନ୍ (୫୦%)ର ୧ କି.ଗ୍ରା.କୁ ମଞ୍ଜି ବୁଣିବାର ୨ ଦିନ ମଧ୍ୟରେ ୫୦୦ ଲିଟର ପାଣିରେ ମିଶାଇ ସିଞ୍ଚନ କଲେ ଘାସ ଦମନ ହୁଏ ।

**ଜଳ ନିୟନ୍ତ୍ରଣ**

ବର୍ଷାଦିନିଆ କ୍ଷୁଦ୍ରଶସ୍ୟ ଜଳସେଚନ ଆବଶ୍ୟକ କରିନଥାଏ । ପିଲ ଦେବା ଓ କ୍ଷୀର ଢୋକିବା ସମୟରେ

ଯଦି ବହୁଦିନ ଧରି ବର୍ଷା ନ ହେଲେ ଜଳସେଚନ ଦିଆଯାଏ ।

**ଫସଲ ପର୍ଯ୍ୟାୟ**

ବର୍ଷାଦିନେ ମାଣ୍ଡିଆ ଚାଷ ପୂର୍ବରୁ ଝୁଡ଼ଙ୍ଗ, ଗୁଆଁର ଚାଷ କରାଯାଇପାରେ । ସେପ୍ଟେମ୍ବର ମାସରେ ଏହାକୁ ମାଟିରେ ମିଶାଇ ମାଣ୍ଡିଆ ଚାଷ ହୋଇପାରିବ । ସଅଳ କିସମ ମାଣ୍ଡିଆ ସେପ୍ଟେମ୍ବର ମାସରେ ଅମଳ ସାରି କୋଳଥ, ମୁଗ, ବିରି, ସୋୟାବିନ୍, ଚିନାବାଦାମ, ସୋରିଷ, ରାଇ ସୋରିଷ ଆଦି ଚାଷ ହୋଇପାରିବ । ଜଳସେଚନର ସୁବିଧା ଥିଲେ ମାଣ୍ଡିଆ ପରେ ଆଳୁ, ବିନ୍ସ, କୋବି, ଗୁଆଁର ଚାଷ କରାଯାଇପାରିବ । ବର୍ଷାଦିନେ ହରଡ଼, ଚିନାବାଦାମ, ବିରି, ବରଗୁଡ଼ି, ସୋୟାବିନ୍‌କୁ ଅନ୍ତଃଫସଲ ରୂପେ ଚାଷ କରାଯାଇପାରିବ ।

**ଅମଳ**

ଫସଲ ପାଚିଗଲେ ଅମଳ କରାଯାଏ । ଏଥିପାଇଁ ମାଣ୍ଡିଆ ଅମଳ ଯନ୍ତ୍ର ବ୍ୟବହାର କରାଯାଏ । ଉପରୋକ୍ତ ପ୍ରଣାଳୀରେ ଚାଷ କଲେ ଏକ ହେକ୍ଟର ଜମିରୁ ୨୦-୨୫ କ୍ୱିଣ୍ଟାଲ ଅମଳ ମିଳିଥାଏ ।

କ୍ଷେତ୍ର ବିଜ୍ଞାନ ବିଭାଗ
ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

❖ ❖ ❖



# ଲଘୁଶସ୍ୟ ଜାତୀୟ ଫସଲରେ କୃଷି ଯାନ୍ତ୍ରିକୀକରଣ

**ପ୍ରଫେସର ସଂଗ୍ରାମ କେଶରୀ ସ୍ୱାଇଁ**

ଓଡ଼ିଶାର କୃଷି ମାନଚିତ୍ରରେ ଲଘୁଶସ୍ୟ ଜାତୀୟ ଫସଲ ଏକ ପ୍ରମୁଖ ସ୍ଥାନ ଗ୍ରହଣ କରିଛି । ରାଜ୍ୟରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ କ୍ଷୁଦ୍ର ଓ ନାମମାତ୍ର ଚାଷୀମାନେ ସାଧାରଣତଃ ଲଘୁଦାନା ଜାତୀୟ ଶସ୍ୟ ଯଥା ମାଣ୍ଡିଆ, ସୁଆଁ, ବାଜରା, ଜହ୍ନା ଇତ୍ୟାଦି ଚାଷ କରିଥାନ୍ତି । ଅତି ସହଜରେ ଏହି ଫସଲ ଚାଷ ହେଉଥିଲେ ମଧ୍ୟ ଏଗୁଡିକର ଉତ୍ପାଦକତା ଆଶାନୁରୂପ ହୋଇ ନ ଥାଏ ସୁତରାଂ ଏହି ଫସଲ ଚାଷରୁ ବିଶେଷ ଲାଭ ମିଳି ନଥାଏ । ଫଳତଃ ଧୀରେ ଧୀରେ ଏହି ଫସଲର ଚାଷ କମ୍ ହେବାକୁ ଲାଗିଲା । ୨୦୧୭ ମସିହାରେ ରାଜ୍ୟ ସରକାରଙ୍କ 'ଓଡ଼ିଶା ମିଲେଟ୍ସ ମିଶନ୍' ପ୍ରକଳ୍ପ ଘୋଷଣା ହେବା ପରେ ଏହି ଫସଲର ଅଗ୍ରଗତି ବେଶ୍ ଉତ୍ସାହପ୍ରଦ ହୋଇପାରିଛି । ରାଜ୍ୟରେ କୃଷିର ଅଗ୍ରଗତି ଏହି ଦଶନ୍ଧିରେ ଉଲ୍ଲେଖନୀୟ । ରାଜ୍ୟ ସରକାର ଖାଦ୍ୟ ନିରାପତ୍ତାର ସନ୍ତୋଷଜନକ ସ୍ଥିତିର ସୁଯୋଗ ନେଇ ଅଧିକ ପୋଷକଯୁକ୍ତ ଲଘୁଦାନା ଶସ୍ୟର ଚାଷ ଉପରେ ଗୁରୁତ୍ୱ ଦେବାକୁ ଚିନ୍ତା କରିଥିଲେ । ଏହି ଦିଗରେ ଅନେକ ଯୁଗାନ୍ତକାରୀ ପଦକ୍ଷେପ ନିଆଯାଇଛି । ଯଥା- ଲଘୁଦାନା ଶସ୍ୟଚାଷ ପାଇଁ ପ୍ରୋତ୍ସାହନ, ଏହି ଶସ୍ୟଗୁଡିକର ସର୍ବନିମ୍ନ ସହାୟକ ମୂଲ୍ୟ ତଥା ଉନ୍ନତ ଜ୍ଞାନ କୌଶଳର ସଫଳ ବିନିଯୋଗ । ଓଡ଼ିଶା ସରକାରଙ୍କର ଓଡ଼ିଶା ମିଲେଟ୍ସ ମିଶନ୍ ପ୍ରକଳ୍ପର ପ୍ରାରମ୍ଭିକ ବିନିଯୋଗ ରାଶି ପ୍ରାୟ ୫୧୨କୋଟି ଟଙ୍କାରୁ ଆରମ୍ଭ ହୋଇ ଏବେ ୨୬୮୭ କୋଟି ଟଙ୍କାରେ ପହଞ୍ଚିଛି ଓ ଏହି ପରିମିତ ଶସ୍ୟଚାଷ ବଢ଼ି ୧,୩୫,୦୦୦ ହେକ୍ଟରରେ ପହଞ୍ଚିପାରିଛି । ରାଜ୍ୟ ସରକାରଙ୍କର ଏତାଦୃଶ ଉଲ୍ଲେଖନୀୟ କାର୍ଯ୍ୟକ୍ରମ ମଧ୍ୟରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ବିଭିନ୍ନ ପ୍ରକାରର ବୈଷୟିକ ଜ୍ଞାନ ଯୋଗାଇ ଦେବାରେ ଏକ ବିଶେଷ ଭୂମିକା ଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟ ତରଫରୁ ଅନେକ ଅଧିକ ଅମଳକ୍ଷମ ବିହନର ଉଦ୍ଭାବନ, କ୍ଷେତ୍ର ପରୀକ୍ଷଣ ତଥା ସାଧାରଣ ଚାଷୀମାନଙ୍କ ମଧ୍ୟରେ ଲୋକପ୍ରିୟ କରିବା ସହ କୃଷି ଯାନ୍ତ୍ରିକୀକରଣ ଦିଗରେ ମଧ୍ୟ ଅନେକ ଯୁଗୋପଯୋଗୀ ପଦକ୍ଷେପ ବେଶ୍ ଆଲୋଚନାର ବିଷୟ ହୋଇଛି ।




ସାଧାରଣତଃ କୃଷି ଯାନ୍ତ୍ରିକୀକରଣ ଦ୍ୱାରା ଚାଷକାମକୁ ସୁବିଧାରେ, କମ୍ ସମୟରେ, କମ୍ ଲୋକବଳରେ, କମ୍ ଖର୍ଚ୍ଚରେ ସମ୍ପନ୍ନ କରାଯାଇଥାଏ

ଏବଂ ଉନ୍ନତମାନର ଚାଷକାମ ଯୋଗୁଁ ଉତ୍ପାଦନ ମଧ ବଢ଼ିଥାଏ । ତେବେ ଆମ ରାଜ୍ୟରେ କ୍ଷୁଦ୍ର ଓ ନାମମାତ୍ର ଚାଷୀମାନେ ଅପେକ୍ଷାକୃତ ଛୋଟ ଜମିମାନଙ୍କରେ ବିଭିନ୍ନ ପ୍ରକାରର ବଳଦଟଣା କୃଷି ଯନ୍ତ୍ରପାତି ବ୍ୟବହାର କରିଥାନ୍ତି । ବିଶ୍ୱବିଦ୍ୟାଳୟ ପକ୍ଷରୁ ଏହି ଚାଷୀମାନଙ୍କର ସମସ୍ୟାକୁ ଦୃଷ୍ଟିରେ ରଖି ଅନେକଗୁଡିଏ ଉନ୍ନତ କୃଷି ଯନ୍ତ୍ରପାତି ଉଦ୍ଭାବନ କରାଯାଇଛି । ଯଥା- ବଳଦଟଣା ଓୟୁଏଟି ମୋଡ଼ପତ୍ର ଲଙ୍ଗଳ, ଓୟୁଏଟି ଉନ୍ନତ ଜୁଆଳି, ବଳଦଟଣା ଚକ୍ରବିଦା, ଓୟୁଏଟି ବଳଦଟଣା ଘାସବଛା ଯନ୍ତ୍ର, ବଳଦଟଣା ଓୟୁଏଟି ଚାରିଧାଡ଼ିଆ ମାଣ୍ଡିଆ ବିହନ ବୁଣାଯନ୍ତ୍ର । ଏହି ସବୁ ଯନ୍ତ୍ରଗୁଡ଼ିକ ହଳେ ମଝିଆଳି ବଳଦ ସାହାଯ୍ୟରେ ସହଜରେ ଟଣାଯାଇଥାଏ । ପାରମ୍ପରିକ ପଦ୍ଧତିରେ ଦେଶୀ ଲଙ୍ଗଳରେ ଚାଷ କରିବା ପରିବର୍ତ୍ତେ ଓୟୁଏଟି ମୋଡ଼ପତ୍ର ଲଙ୍ଗଳଦ୍ୱାରା ସମାନ ଗଭୀରତାରେ ସମ୍ପୂର୍ଣ୍ଣ ଭାବରେ ମାଟି ଓଲଟି ଚାଷ ହୋଇଥାଏ । ଯାହାଦ୍ୱାରା ମାଟି ଉପରେ ଥିବା ଘାସ ଓ ଅନାବନା ଗଛସବୁ ମାଟିତଳକୁ ଯାଇ ଖତରେ ପରିଣତ ହୋଇଯାଏ ଓ ଫସଲକୁ ଖାଦ୍ୟ ଯୋଗାଇବାରେ ସାହାଯ୍ୟ କରିଥାଏ । ଠିକ୍ ସେହିପରି ଓୟୁଏଟି ଉନ୍ନତ ଜୁଆଳି ବ୍ୟବହାର କରିବା ଦ୍ୱାରା ବଳଦମାନଙ୍କ କାନ୍ଧ ଉପରେ ଅପେକ୍ଷାକୃତ କମ୍ ଚାପ ପଡିଥାଏ ଓ ସେମାନଙ୍କର ଟାଣିବା କ୍ଷମତା ବୃଦ୍ଧି ପାଇଥାଏ । ଚକ୍ର ଲଙ୍ଗଳରେ ଜମିରେ ଦ୍ୱିତୀୟ ଓଡଚାଷ ଭଲଭାବରେ ହୋଇ ଗୁଣ୍ଡଚାଷ ହୋଇଥାଏ । ପୁଣି ଏହି ଯନ୍ତ୍ରରେ ଚାଳକ ବସିବାର ବ୍ୟବସ୍ଥା ଥିବାରୁ ଖୁବ୍ ସହଜରେ ଅଳ୍ପ ସମୟରେ ଜମି ପ୍ରସ୍ତୁତି କରାଯାଇପାରେ । ଓୟୁଏଟି ବଳଦଟଣା ଘାସବଛା ଯନ୍ତ୍ରଦ୍ୱାରା ବିହନ ବୁଣିବା ପୂର୍ବରୁ ବ୍ୟବହାର କରି ଜମିରୁ ଘାସ, ଅନାବନା ଗଛ, ଧାନମୂଳି ଇତ୍ୟାଦିକୁ ବାହାର କରିଦିଆଯାଇଥାଏ । ପ୍ରକାଶ ଥାଉକି ଏହି ଯନ୍ତ୍ରଟି ଚାଷୀମାନଙ୍କର ପ୍ରତ୍ୟକ୍ଷ ଅନୁଭୂତି ତଥା ପରାମର୍ଶକ୍ରମେ ଉଦ୍ଭାବନ କରାଯାଇଛି । ସାଧାରଣତଃ ବିହନ ବୁଣିବା ପୂର୍ବରୁ ହାତରେ ଘାସବାଛି ଜମି ପ୍ରସ୍ତୁତ କରିବା ପ୍ରାୟ କଷ୍ଟକର । ମାତ୍ର ଏହାଦ୍ୱାରା ଚାଷ ହୋଇଥିବା ମାଟି ମଧ୍ୟରୁ ଘାସ, ଅନାବନା ଗଛ ବା ଧାନମୂଳି ଇତ୍ୟାଦିକୁ ବେଶ୍ ସହଜରେ, ଅଳ୍ପ ସମୟରେ ଓ ଅଳ୍ପ ଖର୍ଚ୍ଚରେ ବାହାର କରି ଖୁବ୍ ଭଲ ଭାବରେ ଜମି ପ୍ରସ୍ତୁତି କରାଯାଇଥାଏ । ଧାଡ଼ିରେ ବିହନ ବୁଣିବା ପାଇଁ ବିଶ୍ୱବିଦ୍ୟାଳୟ ତରଫରୁ ଓୟୁଏଟି ବଳଦଟଣା ଚାରିଧାଡ଼ିଆ ମାଣ୍ଡିଆ ବିହନବୁଣା ଯନ୍ତ୍ର ଉଦ୍ଭାବନ କରାଯାଇଛି, ଯାହାକି ନିକଟରେ ଭାରତ ସରକାରଙ୍କର ଦ୍ୱାରା ‘‘ଡିଜାଇନ୍ ରେଜିଷ୍ଟ୍ରେସନ୍’’ ମାନପତ୍ର ଲାଭ କରିଛି । ଏହାଦ୍ୱାରା ହଳେ ବଳଦ ଦ୍ୱାରା ଏକସଙ୍ଗରେ ଧାଡ଼ିକୁ ଧାଡ଼ି ଆବଶ୍ୟକୀୟ ବ୍ୟବଧାନରେ ଚାରିଧାଡିରେ ଏକର ପ୍ରତି ୪ କି.ଗ୍ରା ହାରରେ ବିହନ ବୁଣା ଯାଇପାରୁଛି । ପାରମ୍ପରିକ ପଦ୍ଧତିରେ ଲଙ୍ଗଳ ପଛରେ ସିଆରରେ ବିହନ ବୁଣିବା ତୁଳନାରେ ଖୁବ୍ କମ୍ ସମୟରେ କମ୍ ପରିଶ୍ରମରେ ଓ କମ୍ ଖର୍ଚ୍ଚରେ ଧାଡିବୁଣା କାମ କରାଯାଇପାରୁଛି । ରାଜ୍ୟରେ ପ୍ରାୟ ୧୦ଟି ଜିଲ୍ଲାରେ କ୍ଷେତ୍ର ପରୀକ୍ଷଣ ସରିବା ପରେ ନିକଟରେ ଏହି ଯନ୍ତ୍ରକୁ ବ୍ୟବସାୟିକ ଭିତ୍ତିରେ ଉତ୍ପାଦନ କରାଯାଇ ସରକାରୀ ରିହାତି ସହ ଚାଷୀମାନଙ୍କ ପାଖରେ ପହଞ୍ଚାଇବା ପାଇଁ ବିଶ୍ୱବିଦ୍ୟାଳୟ ପକ୍ଷରୁ ଉଦ୍ୟମ ଜାରି ରହିଛି । ଏହିପରି ବିହନବୁଣା ଯନ୍ତ୍ରର ବ୍ୟବହାର ପରେ ଧାଡ଼ି ଧାଡ଼ି ମଧ୍ୟରେ ଘାସ ବାଛିବା ପାଇଁ ହସ୍ତଚାଳିତ ସାଇକେଲ ୱିଡର ବା ଘାସବଛା ଯନ୍ତ୍ର ବ୍ୟବହାର କରାଯାଉଛି, ଯଦ୍ୱାରା କମ୍ ପରିଶ୍ରମରେ, କମ୍ ସମୟରେ ଓ କମ୍ ଖର୍ଚ୍ଚରେ ଘାସବଛା କାମ ସମ୍ପୂର୍ଣ୍ଣ କରାଯାଉଛି ।

ମାଣ୍ଡିଆ, ସୁଆଁ, ବାଜରା ଇତ୍ୟାଦି ଲଘୁଦାନା ଶସ୍ୟକୁ ଅମଳ କରିବା ପାଇଁ ଚାଷୀମାନେ ସାଧାରଣତଃ କଟା ହୋଇଥିବା ଫସଲକୁ ବାଡିରେ ବାଡେଇଥାନ୍ତି ବା ବଳଦରେ ବେଙ୍ଗଳା ପକାଇଥାନ୍ତି । ଏହାଦ୍ୱାରା ଅଧିକ ପରିଶ୍ରମ ଓ ଖର୍ଚ୍ଚ ହୋଇଥାଏ । ଆହୁରି ମଧ ମାଟି, ଧୂଳି ଇତ୍ୟାଦି ଶସ୍ୟଦାନା ସହ ମିଶି ଯାଉଥିବାରୁ ଏହାର ଗୁଣାତ୍ମକ ମାନ ହ୍ରାସ ପାଇଥାଏ । ଏହି ସମସ୍ୟାକୁ ଦୃଷ୍ଟିରେ ରଖି ବିଶ୍ୱବିଦ୍ୟାଳୟ ତରଫରୁ ‘‘ଓୟୁଏଟି ମାଣ୍ଡିଆ

ଅମଳ ଓ ସଫା କରିବା ଯନ୍ତ୍ର'' ଉଦ୍ଭାବନ କରାଯାଇଛି । ଏହି ଯନ୍ତ୍ରକୁ ଭାରତ ସରକାରଙ୍କ ଦ୍ୱାରା 'ପ୍ୟାଟେଣ୍ଟ' ପ୍ରଦାନ କରାଯାଇଛି । ଏହି ଯନ୍ତ୍ରର ବ୍ୟବସାୟୀକରଣ କରାଯାଇ ସରକାରୀ ରିହାତି ସହ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି । ଓଡିଶା ମିଲେଟ୍ସ ମିଶନ୍ କାର୍ଯ୍ୟକ୍ରମ ଜରିଆରେ ଅଦ୍ୟାବଧି ରାଜ୍ୟର ୧୭ଟି ଜିଲ୍ଲାରେ ୧୦୦୦ଟି ଓୟୁଏଟି ମାଣ୍ଡିଆ ଅମଳ ଓ ସଫା କରିବା ଯନ୍ତ୍ର ଦ୍ୱାରା ବିଭିନ୍ନ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ, କୃଷକ କ୍ଲବ୍, ବେସରକାରୀ ସଂଗଠନ ମାଧ୍ୟମରେ ସଫା ମାଣ୍ଡିଆ ଉତ୍ପାଦନ କରିବାରେ ଏକ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଛି । ଏହାଦ୍ୱାରା ଖୁବ୍ କମ୍ ସମୟରେ, କମ୍ ଖର୍ଚ୍ଚରେ, ଅଳ୍ପ ପରିଶ୍ରମରେ ପରିଷ୍କାର ଓ ସଫା ମାଣ୍ଡିଆ ଦାନା ଅମଳ କରାଯାଇପାରୁଛି, ଯାହାର ବଜାର ଚାହିଦା ବେଶ୍ ବୃଦ୍ଧି ପାଉଛି ।

ପରବର୍ତ୍ତୀ ସମୟରେ ବିଶ୍ୱବିଦ୍ୟାଳୟ ତରଫରୁ ସୁଆଁ, ବାଜରା, ଜହ୍ନା ଓ ବିଲସୁଆଁ ଆଦି ଲଘୁଦାନା ଶସ୍ୟ ଅମଳ କରିବା ପାଇଁ ଏକ ଅଶ୍ୱଶକ୍ତି ବିଶିଷ୍ଟ ଅମଳ ଓ ସଫାକରିବା ଯନ୍ତ୍ରଗୁଡିକ ଉଦ୍ଭାବିତ କରାଯାଇପାରିଛି । ସରକାରଙ୍କର ଓଡିଶା ମିଲେଟ୍ ମିଶନ୍ କାର୍ଯ୍ୟକ୍ରମ ସଫଳ ହେବା ଅବସରରେ ରାଜ୍ୟରେ ଏହି ସବୁ ଲଘୁଶସ୍ୟ ଦାନାଗୁଡିକର ଚାଷ ଅଞ୍ଚଳ ବୃଦ୍ଧି ହେବା ସହିତ ଉପରୋକ୍ତ ଯନ୍ତ୍ରଗୁଡିକର ଚାହିଦା ବୃଦ୍ଧି ପାଉଛି । ସମ୍ପ୍ରତି ରାଜ୍ୟରେ ମାଣ୍ଡିଆ ଚାଷ କ୍ରମାଗତ ଭାବରେ ଲୋକପ୍ରିୟ ହେବା ପରିପ୍ରେକ୍ଷୀରେ ନିକଟରେ ବିଶ୍ୱବିଦ୍ୟାଳୟ ତରଫରୁ ଓୟୁଏଟି ୩.୫ ଅଶ୍ୱଶକ୍ତି ଡିଜେଲ ଇଞ୍ଜିନ୍ ଚାଳିତ ମାଣ୍ଡିଆ ଅମଳଯନ୍ତ୍ର ବିକଶିତ କରାଯାଇଛି, ଯାହାକୁ ଏକ ମୋଟର ସାଇକେଲ ସହ ସଂଯୁକ୍ତ କରାଯାଇ ଘରକୁ ଘର ଅବା ଗାଁ ରୁ ଗାଁ କୁ ସହଜରେ ନିଆଯାଇ ପାରିବ ଓ ଆବଶ୍ୟକ ଅନୁସାରେ ଅମଳ କାମ ପାଇଁ ବ୍ୟବହାର କରାଯାଇପାରିବ । ଏତଦ୍‌ବ୍ୟତୀତ ସରକାରଙ୍କ ତରଫରୁ ମାଣ୍ଡିଆ ସଂଗ୍ରହ କରାଯିବା ସମୟରେ ସୁବିଧାରେ ପରିଷ୍କାର ଓ ସଫା କରିବା ପାଇଁ ଓୟୁଏଟି ମାଣ୍ଡିଆ ସଫାକରିବା ଓ ବର୍ଗୀକରଣ ଯନ୍ତ୍ର ବିକଶିତ କରାଯାଇଛି, ଚାଷୀମାନେ ମଣ୍ଡି ପାଖରେ ଏହି ଯନ୍ତ୍ର ସାହାଯ୍ୟରେ ସେମାନଙ୍କର ଉତ୍ପାଦିତ ମାଣ୍ଡିଆକୁ ସଫାକରି ସହଜରେ ବିକ୍ରି କରିପାରିବେ ।

ଗତବର୍ଷ ରାଜ୍ୟ ସରକାରଙ୍କ ତରଫରୁ ଓଡିଶା ମିଲେଟ୍ ମିଶନ୍ କାର୍ଯ୍ୟକ୍ରମକୁ ଅଧିକ ବ୍ୟାପକ କରିବା ଦିଗରେ ପଦକ୍ଷେପ ସ୍ୱରୂପ ସମସ୍ତ ୩୦ଟି ଜିଲ୍ଲାରେ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଘୋଷଣା କରିଛନ୍ତି । ସମ୍ପ୍ରତି ରାଜ୍ୟରେ ଅନ୍ୟୂନ ୧୦୦ଟି ''କୃଷକ ଉତ୍ପାଦକ ସଂଘ'' ସ୍ଥାପନ କରାଯାଇଛି ଓ ଏହି ସଂଘଗୁଡିକ ଦ୍ୱାରା ଏକସଙ୍ଗରେ ଅଧିକ ଜମିରେ ଲଘୁଦାନା ଶସ୍ୟ ଚାଷ କରାଯିବାର ବ୍ୟବସ୍ଥା କରାଯାଉଛି । ଏହି ପରିପ୍ରେକ୍ଷୀରେ ବିଶ୍ୱବିଦ୍ୟାଳୟ ତରଫରୁ ଟ୍ରାକ୍ଟରଚାଳିତ ୯ ଧାଡିଆ ଲଘୁଦାନା ଶସ୍ୟ ବୁଣିବା ଯନ୍ତ୍ର, ସ୍ୱୟଂ ଶକ୍ତି ଚାଳିତ ମାଣ୍ଡିଆ କଟାଯନ୍ତ୍ର ଓ ଟ୍ରାକ୍ଟର ଚାଳିତ ମାଣ୍ଡିଆ ଅମଳ ଓ ସଫା କରିବା ଯନ୍ତ୍ର ଉପରେ ଗବେଷଣା କରାଯାଇଛି । ଚଳିତ ବର୍ଷ ଟ୍ରାକ୍ଟର ଚାଳିତ ୯ ଧାଡ଼ିଆ ମଞ୍ଜି ବୁଣା ଯନ୍ତ୍ର ସାହାଯ୍ୟରେ ସୁନ୍ଦରଗଡ ଜିଲ୍ଲା ବାଲିଶଙ୍କରା ବ୍ଲକ୍ ଓ ସମ୍ବଲପୁର ଜିଲ୍ଲାର ଗମ୍ଭାରୀପାଲି ଫାର୍ମରେ ୨୫ ଏକର ଜମିର ଧାଡିରେ ସୁଆଁ ବିହନ ବୁଣାଯାଇଛି । ବିଶ୍ୱବିଦ୍ୟାଳୟ ତରଫରୁ ଚଳିତବର୍ଷ ବିହନ ଉତ୍ପାଦନ କାର୍ଯ୍ୟକ୍ରମରେ ଏହି ଯନ୍ତ୍ରର ବ୍ୟବହାର ବେଶ୍ ସଫଳ ହୋଇପାରିଛି । ଏହା ସାହାଯ୍ୟରେ ମାତ୍ର ଏକ ଘଣ୍ଟାରେ ଏକ ଏକର ଜମିର ଧାଡିରେ ଲଘୁଦାନା ଶସ୍ୟ ବିହନ ଅନୁମୋଦିତ ପରିମାଣରେ ଏକର ପିଛା ୪ କି.ଗ୍ରା. ହିସାବରେ ବୁଣାଯାଉଛି । ମାଣ୍ଡିଆ ଫସଲ ଅମଳ ସମୟରେ କେବଳ ଗଛର କେଣ୍ଡାଗୁଡିକୁ କଟାଯାଇଥାଏ ଓ ସେଥିପାଇଁ ବେଶ୍ ସମୟ ନିଏ ଓ ପରିଶ୍ରମ କରିବାକୁ ପଡେ । ବିଶ୍ୱବିଦ୍ୟାଳୟ ତରଫରୁ ଚଳିତ ବର୍ଷ ସ୍ୱୟଂଶକ୍ତି ଚାଳିତ କଟାଯନ୍ତ୍ର ସାହାଯ୍ୟରେ ମାଣ୍ଡିଆ ଗଛଗୁଡିକୁ କାଟିବା ପାଇଁ ସଫଳ ଭାବରେ ବ୍ୟବହାର କରାଯାଇପାରୁଛି । ଏହାଦ୍ୱାରା ମାତ୍ର ଦୁଇଘଣ୍ଟାରେ ଜଣେ

ଲୋକ ଏକ ଏକର ଜମିରୁ ମାଣ୍ଡିଆ ଗଛ କାଟି ଦେଇ ପାରୁଛି । କଟା ହୋଇଥିବା ଓ ଶୁଖିବା ପରେ ଏହି ଫସଲକୁ ଓୟୁଏଟି ଟ୍ରାକ୍ଟର ଚାଳିତ ମାଣ୍ଡିଆ ଅମଳ ଓ ସଫା କରିବା ଯନ୍ତ୍ର ସାହାଯ୍ୟରେ ସହଜରେ ଅମଳ ଓ ସଫା କରାଯାଇପାରୁଛି । ପ୍ରକାଶ ଥାଉକି ଏହିପରି ଭାବରେ ଅମଳ କରିବା ଦ୍ୱାରା ଚାଷୀମାନେ ଖୁବ୍ କମ୍ ସମୟରେ ଓ ଅଳ୍ପ ପରିଶ୍ରମରେ ଅଧିକ ଅଞ୍ଚଳର ଫସଲକୁ ଅମଳ କରିପାରିବେ । ସୁତରାଂ ରାଜ୍ୟରେ ଲଘୁଦାନା ଶସ୍ୟର ଚାଷ ଅଞ୍ଚଳ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ବିଶ୍ୱବିଦ୍ୟାଳୟ ତରଫରୁ ଯାନ୍ତ୍ରିକୀକରଣ ସମ୍ବନ୍ଧିତ ଜ୍ଞାନକୌଶଳର ବିକାଶ ଯୁଗୋପଯୋଗୀ ସାବ୍ୟସ୍ତ ହୋଇପାରିଛି ।

ଚଳିତବର୍ଷ ସାରା ବିଶ୍ୱରେ ଅନ୍ତର୍ଜାତୀୟ ମିଲେଟ୍ ବର୍ଷ ପାଳନ କରାଯାଉଥିବା ଅବସରରେ ଆମ ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ଓଡ଼ିଶା ମିଲେଟ୍ ମିଶନ କାର୍ଯ୍ୟକ୍ରମକୁ ସାଫଲ୍ୟ ମଣ୍ଡିତ କରିବା ଦିଗରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ତରଫରୁ ଉଦ୍ଭାବିତ ଓ ବିକଶିତ ହୋଇଥିବା ଯାନ୍ତ୍ରିକୀକରଣ ଜ୍ଞାନକୌଶଳଗୁଡ଼ିକ ପ୍ରମୁଖ ଭୂମିକା ଗ୍ରହଣ କରିପାରିଛି । ଏହାଦ୍ୱାରା ରାଜ୍ୟରେ ଲଘୁଦାନା ଶସ୍ୟ ଚାଷ କରୁଥିବା ଚାଷୀଭାଇମାନେ ନିର୍ଦ୍ଦିଷ୍ଟ ତଥା ବିଶେଷ ଭାବରେ ଉପକୃତ ହୋଇପାରିବେ ବୋଲି ସହଜରେ ଅନୁମାନ କରାଯାଉଛି ।

ଗବେଷଣା ଅଧକ୍ଷ
ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

❖ ❖ ❖



# ପୁଷ୍ଟିଶସ୍ୟ ଜାତୀୟ ଫସଲର ରୋଗପୋକ ପରିଚାଳନା

**ସଚ୍ଚିଦାନନ୍ଦ ପଣ୍ଡା**

ଶସ୍ୟ(cereal) ରୋମାନ ଠାକୁରାଣୀ ସିରିସ୍(ceres)ରୁ ଆସିଅଛି । ପୁରାକାଳରେ ରୋମାନମାନେ ସିରିସ୍‌ଙ୍କୁ ପୂଜା କରୁଥିଲେ ଓ ଶସ୍ୟ ଅମଳ ହେବାପରେ ପ୍ରଥମେ ସିରିସ୍‌ଙ୍କୁ ଏହି ଅମଳ ଶସ୍ୟରେ ପୂଜା କରୁଥିଲେ । ଏହି ଶସ୍ୟ ସାଧାରଣତଃ ଗହମ ଓ ବାର୍ଲି ଥିଲା । ପରେ ପରେ ଏହି ଶସ୍ୟକୁ ମନୁଷ୍ୟ ଖାଦ୍ୟରୂପେ ବ୍ୟବହାର କଲା । ସାଧାରଣତଃ ଘାସ (Gramineae) ପରିବାରରୁ ଉତ୍ପନ୍ନ ଫଳକୁ ମନୁଷ୍ୟ ଖାଦ୍ୟ ଭାବରେ ବ୍ୟବହାର କଲା । ଏହା ମଧ୍ୟରେ ରହିଛି ଧାନ, ଗହମ, ମକା, ଜୋଆର, ବାଜରା, ମାଣ୍ଡିଆ, ବାର୍ଲି, ସୁଆଁ, କୋଦ, କାଙ୍ଗୁ, ଚିନା ଓ ବିଲ ସୁଆଁ । ଏମାନଙ୍କ ମଧ୍ୟରୁ ଧାନ, ଗହମ ଓ ମକା ପୃଥିବୀର ଅନେକ ଅଞ୍ଚଳରେ ମୁଖ୍ୟ ଖାଦ୍ୟ ଭାବରେ ଗ୍ରହଣ କରାଯାଉଛି । ଜୋଆର, ବାଜରା, ମାଣ୍ଡିଆ, ବାର୍ଲି, ସୁଆଁ, କୋଦ, କାଙ୍ଗୁ, ଚିନା ଓ ବିଲସୁଆଁ ଅନେକଙ୍କ ଦ୍ୱାରା ଖାଦ୍ୟ ଭାବରେ ବ୍ୟବହାର ହେଲେ ମଧ୍ୟ ବିଶେଷଭାବେ ବ୍ୟବହାର ହୁଏ ନାହିଁ । ଏଣୁ ଏହାକୁ ଗୌଣଶସ୍ୟ(millet) ଭାବରେ ଜଣାଯାଏ । ଗୌଣ ଶସ୍ୟମାନଙ୍କ ମଧ୍ୟରୁ ବାଜରା ଓ ଜୋଆରକୁ ବଡ଼ ଦାନା ଶସ୍ୟ, ମାଣ୍ଡିଆ, ଚିନା, କାଙ୍ଗୁ, ସୁଆଁ, ବିଲସୁଆଁ, କୋଦକୁ କ୍ଷୁଦ୍ରଶସ୍ୟ ବା ଛୋଟ ଦାନା ଶସ୍ୟ(Small Millet) କୁହାଯାଏ । ଗୌଣ ଶସ୍ୟ ପୋଷକତତ୍ତ୍ୱର ଗନ୍ତାଘର । ଏହା ଔଷଧୀୟ ଗୁଣରେ ପରିପୂର୍ଣ୍ଣ । ମଧୁମେହ ରୋଗୀଙ୍କ ଖାଦ୍ୟରୂପେ ଏହା ବ୍ୟବହାର ହୁଏ । ଏହା କୋଲେଷ୍ଟରଲ କମାଏ । କ୍ୟାନ୍‌ସର ରୋଗ ଦୂର କରିବାରେ ବ୍ୟବହାର ହୁଏ । ମେଦ ବୃଦ୍ଧି କମାଇବା, ଆଣ୍ଠୁଗଣ୍ଠି ବାତ ଦୂର କରିବାରେ ସାହାଯ୍ୟ କରେ । ଏହି ଗୌଣ ଫସଲ ଦାନାକୁ ମୂଲ୍ୟଯୁକ୍ତ ଖାଦ୍ୟରେ ପରିଣତ କରି ଏବେ ବହୁଳ ଭାବରେ ଜାତୀୟ ଓ ଅନ୍ତର୍ଜାତୀୟ ବଜାରରେ ବିକ୍ରି କରାଯାଉଛି । ଏହି ପରିପ୍ରେକ୍ଷୀରେ ଅମଳ ହେଉଥିବା ଏହାର ଦାନା ବିଷମୁକ୍ତ ହେବା ନିହାତି ଦରକାର । ଆସନ୍ତୁ ଏଠାରେ ଜୈବିକ ଉପାୟରେ ଏହାର ସମନ୍ୱିତ ରୋଗ ପୋକ ପରିଚାଳନା ବିଷୟରେ ଆଲୋଚନା କରିବା ।



**ପୋକ**

୧.କାଣ୍ଡବିନ୍ଧା ପୋକ(Stem borer)

(କ)ପାଟଳକାଣ୍ଡ ବିନ୍ଧାପୋକ (Pink Stem borer- *Sesamia inferens*)

ଖରାଦିନେ ମାଣ୍ଡିଆ ଫସଲରେ କାଣ୍ଡବିନ୍ଧା ପୋକ ବହୁଳ ଭାବରେ ଲାଗିଥାନ୍ତି । ତନ୍ମଧ୍ୟରୁ ପାଟଳ କାଣ୍ଡବିନ୍ଧା ପୋକ ଅନ୍ୟତମ । ଏହା ସାଧାରଣତଃ ଫେବୃଆରୀ ଓ

ମାର୍ଚ୍ଚ ମାସରେ ଫସଲରେ ଦେଖାଯାଆନ୍ତି । ପାଟଳ କାଣ୍ଡବିନ୍ଧା ପୋକର ଅଣ୍ଡାଗୁଡିକ କାଣ୍ଡ ଓ ପତ୍ରାଚ୍ଛଦ ମଧ୍ୟବର୍ତ୍ତୀ ସ୍ଥାନରେ ଧାଡ଼ିରେ ଲାଗିଥାଏ । ଗୋଟିଏ ମେଞ୍ଚାରେ ପ୍ରାୟ ୩୦-୧୦୦ ଗୋଟି ଅଣ୍ଡା ରହିଥାଏ । ପ୍ରାୟ ୩ଦିନ ପରେ ଅଣ୍ଡାଗୁଡିକ ଫୁଟି ଶୂକ ବାହାରେ ଏବଂ କାଣ୍ଡରେ ଛୋଟ କଣା କରି ତା' ମଧ୍ୟକୁ ପ୍ରବେଶ କରେ । ଏହାର ଲମ୍ବ ପ୍ରାୟ ୩୫ମି.ମି ଓ ରଙ୍ଗ ଗୋଲାପୀ ହୋଇଥିବାରୁ ଏହାକୁ ପାଟଳ କାଣ୍ଡବିନ୍ଧା ପୋକ କୁହାଯାଏ । ଏହି ଶୂକଗୁଡିକ କାଣ୍ଡ ମଧ୍ୟରେ କୋଷାରେ ପରିବର୍ତ୍ତନ ହେବାପରେ ଗାଢ ଖଇରିଆ ରଙ୍ଗ ଦେଖାଯାଏ । ଏହି ପ୍ରଜାତିର ରଙ୍ଗ ନଡ଼ାରଙ୍ଗର ହୋଇଥାଏ ଓ ଏହା ପ୍ରାୟ ୪-୬ଦିନ ବଞ୍ଚିଥାଏ । ଏହି ପୋକର ଜୀବନଚକ୍ର ୪୬-୮୩ ଦିନରେ ଶେଷ ହୁଏ । ଏହି ପୋକ ଦୁଇଟି ଅବସ୍ଥାରେ ମାଣ୍ଡିଆ ଫସଲକୁ ଆକ୍ରମଣ କରିଥାଏ । ପିଲ ଦେବା ଅବସ୍ଥାରେ ଏହା କାଣ୍ଡ ଭିତରେ ପ୍ରବେଶ କରି ଗଛର ମଞ୍ଜ ଖାଇଯିବା ହେତୁ ଆକ୍ରାନ୍ତ ପିଲଟି ଶୁଖିଯାଏ । ଏହାକୁ 'ମଞ୍ଜକିଳା' କହନ୍ତି । କାଣ୍ଡ ବାହାରିବା ସମୟରେ ଆକ୍ରମଣ କଲେ କେଣ୍ଡାରୁ ଦାନା ଶୁଖିଯାଏ ଓ କେଣ୍ଡାକୁ ଟାଣିଲେ ବାହାରିଆସେ । ଏହାକୁ 'ବଗପକ୍ଷିଆ' କହନ୍ତି ।

୨) **ଧଳାକାଣ୍ଡ ବିନ୍ଧାପୋକ**(White stem borer- *scirpophaga innotata*)

ଏହା ମାଣ୍ଡିଆ ଫସଲକୁ ଆକ୍ରମଣ କରୁଥିବା ଏକ ନିର୍ଦ୍ଦିଷ୍ଟ କୀଟ । ଅନ୍ୟାନ୍ୟ ଫସଲରେ ଏହା ଖୁବ୍ କମ୍ ଦେଖାଯାଏ । ଏହାର ଶୂକଟି ହଳଦିଆ ବା ଘିଅ ରଙ୍ଗର ଓ ମା' ପ୍ରଜାତିଟି ଗାଢ ଖଇରିଆ ରଙ୍ଗର ହୋଇଥାଏ । ପାଟଳ କାଣ୍ଡବିନ୍ଧା ପୋକ ପରି ଏହା ଆକ୍ରମଣ କରେ ଓ କ୍ଷତି କରେ ।

୩) **କର୍ତ୍ତକ କୀଟ** (Cutworm-*Agrotis spp*)

ମାଆ ପୋକ ପତ୍ର ଉପରେ ଅଣ୍ଡା ଦିଏ । ୪ ଦିନ ପରେ ଅଣ୍ଡା ଫୁଟି ଶୂକ ଅବସ୍ଥା ପ୍ରାପ୍ତ ହୋଇଥାଏ । ସଦ୍ୟଜାତ ଶୂକ ସବୁଜ ପତ୍ରକୁ ଖାଏ । ଦିନବେଳେ ଶୂକ ଗଛ ମୂଳେ ବା ଘାସ ଭିତରେ କିମ୍ବା କିଆରି ଫାଟ ମଧ୍ୟରେ ଲୁଚି ରହେ ଓ ରାତିରେ ସକ୍ରିୟ ହୋଇ ଫସଲର କ୍ଷତି କରେ । ୧୦-୧୬ ଦିନରେ ଶୂକ କୋଷା ଅବସ୍ଥାକୁ ପ୍ରାପ୍ତ ହୋଇ ମାଟି ଭିତରେ ରହେ ଏବଂ ୭-୧୦ ଦିନ ମଧ୍ୟରେ ପୂର୍ଣ୍ଣାଙ୍ଗ ଅବସ୍ଥାକୁ ପ୍ରାପ୍ତ ହୁଏ । ପୂର୍ଣ୍ଣାଙ୍ଗ ଶଳଭ ବାଦାମୀ ରଙ୍ଗର ଅଟେ । ଏହି କୀଟ ମାଣ୍ଡିଆ ଫସଲର ତଳି ଅବସ୍ଥାରେ ଫସଲକୁ ସମ୍ପୂର୍ଣ୍ଣ ଖାଇଦିଏ, ଗଛ ବଡ଼ ହେଲେ ପତ୍ର ସବୁ ଖାଇ ଗଛକୁ ଥୁଣ୍ଟା କରିଦିଏ ।

୪)**ଝିଣ୍ଟିକା**(Grasshopper- *Hieroglyphus nigrorajletusa*)

ଧାନ ଫସଲ ପରି ମାଣ୍ଡିଆ ଫସଲରେ ଝିଣ୍ଟିକା ଆକ୍ରମଣ କରିଥାଏ । ମାଣ୍ଡିଆ ଫସଲରେ ବିଭିନ୍ନ ପ୍ରକାରର ଝିଣ୍ଟିକା ଦେଖାଯାଏ । ଛୋଟ ଓ ବଡ଼ ଶାଗୁଆ ଝିଣ୍ଟିକା, ଡେଣାବିହୀନ ଝିଣ୍ଟିକା ଇତ୍ୟାଦି ପ୍ରମୁଖ । ଏହାର ସଂଖ୍ୟା ପରିବେଶର ଅବସ୍ଥା ଯଥା: ବର୍ଷା, ଉତ୍ତାପ ଇତ୍ୟାଦି ଉପରେ ନିର୍ଭରଶୀଳ ହୋଇଥାଏ । ନଭେମ୍ବର-ଡିସେମ୍ବର ମାସରେ ମା' ଝିଣ୍ଟିକାଟି ମାଟି ତଳେ ଅଣ୍ଡା ଦେଇଥାଏ ଏବଂ ଜୁନ୍, ଜୁଲାଇ ମାସରେ ବର୍ଷା ପଡ଼ିବା ପରେ ସେଥିରୁ ଝିଣ୍ଟିକା ବାହାରିଥାଏ । ପ୍ରାୟ ୨-୩ ମାସ ପର୍ଯ୍ୟନ୍ତ ଏହା ଫସଲକୁ ଖାଇଥାଏ ।

୫) **ଜଉ ପୋକ**(Aphid- *Rhopalosiphum maidis*)

ମାଆ ପୋକମାନେ ସମୟେ ସମୟେ ସିଧାସଳଖ ଛୁଆ(ଅର୍ଭକ) ଜନ୍ମ କରିଥାନ୍ତି । ଏମାନେ ଗଛର କାଣ୍ଡ ଓ ପତ୍ରରୁ ରସ ଶୋଷି ଖାଆନ୍ତି । ଏମାନେ ଦ୍ରୁତ ଗତିରେ ବଂଶ ବୃଦ୍ଧି କରି ୨-୩ଟି ପିଢି ସମ୍ପନ୍ନ କରି ଫସଲର କ୍ଷତି ଘଟାନ୍ତି । ଏମାନଙ୍କ ଆକ୍ରମଣ ଯୋଗୁଁ ପତ୍ର ହଳଦିଆ ପଡିଯାଏ ଓ ଗଛ ଭଲ ବଢିପାରେ ନାହିଁ । ଆକ୍ରାନ୍ତ ଗଛର କେଣ୍ଡା ଛୋଟ ହୋଇ ଦାନା ଗଠନ ବାଧାପ୍ରାପ୍ତ ହୁଏ ।

୬) **ଦିଆଳି ପୋକ**(Jassids- *Amrasca biguttula biguttula*)

ଏମାନେ ଅଗଷ୍ଟରୁ ସେପ୍ଟେମ୍ବର ଏବଂ ଫେବୃଆରୀରୁ ମାର୍ଚ୍ଚ ମାସ ମଧ୍ୟରେ ମାଣ୍ଡିଆ ଫସଲରେ କ୍ଷତି ଘଟାଇଥାନ୍ତି ।

ଉଭୟ ପୂର୍ଣ୍ଣାଙ୍ଗ ଓ ଅର୍ଭକ କୀଟମାନେ ପତ୍ରରୁ ରସ ଶୋଷି ଖାଆନ୍ତି । ଅଧିକ ଆକ୍ରାନ୍ତ କ୍ଷେତର ପତ୍ର ସବୁ ହଳଦିଆ ପଡି ଶୁଖିଯାଏ ଏବଂ ଅମଳ ବାଧାପ୍ରାପ୍ତ ହୁଏ ।

(୭) **ଉଈ** (Termites- *Odontotermes obesus*)

ଉଈମାନେ ମାଟି ଭିତରେ ରହି ଗଛର ଚେରକୁ କାଟିଦିଅନ୍ତି । ଏହାଛଡା ଗଜା ହେଉଥିବା ମଞ୍ଜିକୁ ନଷ୍ଟ କରିଦିଅନ୍ତି । ଆକ୍ରାନ୍ତ ଗଛଗୁଡିକ ହାତରେ ଧରିଲେ ସହଜରେ ବାହାରିଆସେ । ଏମାନେ ଜୁଲାଇ ମାସଠାରୁ ସେପ୍ଟେମ୍ବର ମାସ ମଧ୍ୟରେ ବିଶେଷଭାବରେ ଦେଖାଯାଆନ୍ତି ।

(୮)**କାଣ୍ଡ ମାଛି** (Shoot flies-*Atherigona soccata*)

କାଣ୍ଡ ମାଛି ବିଭିନ୍ନ ପ୍ରକାରର ମିଲେଟକୁ ଆକ୍ରମଣ କରିଥାଏ । ଯାହାଦ୍ୱାରା ଶସ୍ୟ ଉତ୍ପାଦନ ଏବଂ ଶୁଖିଲା ନଡ଼ାରେ କ୍ଷତି ହୋଇଥାଏ । ସାଧାରଣତଃ ବୀଜ ଅଙ୍କୁରିତ ହେବାର ୧-୬ ସପ୍ତାହ ମଧ୍ୟରେ ଏହା ଦେଖାଯାଏ । କୀଟଟି ବଢୁଥିବା ଗଛର ଅଗ ପତ୍ରକୁ ଖାଇଥାଏ, ଫଳରେ ପତ୍ରଟି ଝାଉଁଳି ପଡେ ଓ ପରେ ମଧ୍ୟପତ୍ର ଶୁଖିବା ଦ୍ୱାରା 'ମଞ୍ଜକିଳା'ର ସାଧାରଣ ରୂପ ହୋଇଥାଏ ।

**ରୋଗ**

(୧)ମହିଷା ରୋଗ(Blast-*Pyricularia grisea*)

ଏହି ରୋଗ ମାଣ୍ଡିଆ ଫସଲର ବିଶେଷ କ୍ଷତି କରିଥାଏ । ଏହା ଜୁଲାଇରୁ ନଭେମ୍ବର ଏବଂ ଫେବୃଆରୀରୁ ମାର୍ଚ୍ଚ ମଧ୍ୟରେ ଦେଖାଯାଏ । ଏହା ମାଣ୍ଡିଆ ଗଛର ପତ୍ର ତଥା ତାର ଡେମ୍ଫ ଓ ଥୋଡ଼କୁ ଆକ୍ରାନ୍ତ କରିଥାଏ । ଏହାର ଦାଗଗୁଡିକ ଆଖି ଆକାରର ହୋଇଥାଏ । ଦାଗର ଚାରିପଟେ ନାରଙ୍ଗୀ ରଙ୍ଗ ହୋଇଥାଏ ଏବଂ ମଝି ଅଂଶ ଧୂସର ରଙ୍ଗ ଧାରଣ କରିଥାଏ । ତଳିଘରାରେ ଚାରାଗୁଡିକ କିମ୍ବା ଫୁଲ ଉଡାଇବା ପରେ କେଣ୍ଡାକୁ ଏହି ରୋଗ ସଂକ୍ରମଣ କଲେ ଫସଲର ବହୁତ କ୍ଷତି ଘଟିଥାଏ । ଏହା ଯଦି ଫୁଲ ଉଡାଇବା ସମୟରେ ଥୋପାର ଡେମ୍ଫକୁ ଆକ୍ରାନ୍ତ କରେ ତେବେ ସମ୍ପୂର୍ଣ୍ଣ ଥୋପା ଅଗାଡ଼ି ହୋଇଯାଏ । ଫୁଲ ଉଡାଇବା ସମୟରେ ମେଘୁଆ ପାଗ ହୋଇ ଝିପିଝିପି ବର୍ଷା ହେଲେ ମହିଷା ରୋଗ ବଢିଯାଏ ।

(୨)ସ୍ମଟ୍ ରୋଗ: (Smut- *Melanopsichium eleusinis*)

ଏହି ରୋଗ କେବଳ କେଣ୍ଡାରେ ଦେଖାଯାଏ । ଫିମ୍ପିଗୁଡିକ ପ୍ରତ୍ୟେକ ଦାନାକୁ ସଂକ୍ରମିତ କରିଥାନ୍ତି । ଦାନା ଉପରେ ଫିମ୍ପିଗୁଡିକ ସବୁଜ ରଙ୍ଗର ଛୋଟ ଦାନା ପରି ଏକୀଭୂତ ହେବା ଦ୍ୱାରା ଦାନାର ଆକୃତି ସାଧାରଣ ଆକୃତିଠାରୁ ଦୁଇଗୁଣ ବଡ଼ ଦେଖାଯାଏ । ସଂକ୍ରମିତ ଦାନାଗୁଡିକ ଗାଢ ସବୁଜ କିମ୍ବା କଳା ରଙ୍ଗର କୋମଳ ସତରଞ୍ଜ ପରି ଦେଖାଯାଆନ୍ତି । ଏହି ରୋଗ ଦ୍ୱାରା ଦାନାର ଗୁଣାତ୍ମକ ମାନ ହ୍ରାସ ପାଏ ।

(୩) ପାଦ ସଢା: (Foot root- *Sclerotium rolfsii*)

ଚାରାଗୁଡିକ ସଂକ୍ରମଣ ହେବାର ପ୍ରାଥମିକ ଅବସ୍ଥାରେ ସବୁଆ ହୋଇ ଫିକା ପଡ଼ିଯାଏ । ସଂକ୍ରମିତ ଚାରାଗୁଡିକ ଡେଙ୍ଗା ହୋଇଯାଏ । ଗଛର ତଳ ପତ୍ରଗୁଡିକ ଗୋଟିଏ ପରେ ଗୋଟିଏ ଶୁଖିଯାଇ ଉପରକୁ ମାଡିଯାଏ ।

(୪) ପତ୍ରଚିତା: (Leaf Spot- *Drechslera nodulosum*)

ଏହି ରୋଗ ହେଲେ ମାଣ୍ଡିଆ ଗଛ ପତ୍ରରେ ଛୋଟ ଛୋଟ ବାଦାମୀ ରଙ୍ଗର ଗୋଲାକୃତି କିମ୍ବା ଲମ୍ବାଳିଆ ଦାଗମାନ ଦେଖାଯାଏ । ଏହି ଦାଗଗୁଡିକ ଆୟତନରେ ବଢି ଗୋଟିଏ ଦାଗ ଅନ୍ୟଦାଗ ସହ ମିଶିଯାଏ । ଗଛର ତଳପତ୍ର ଉପର ପତ୍ର ଅପେକ୍ଷା ବେଶି ଆକ୍ରାନ୍ତ ହୋଇଥାଏ । ରୋଗାକ୍ରାନ୍ତ ପତ୍ର ଶୁଖି ମରିଯାଏ । କେଣ୍ଡାଗୁଡିକ ଛୋଟ ହୁଏ ଓ ଦାନା ମୁରୁକୁଟିଆ ହୁଏ ।

(୫) ବାଜରାର ଏରଗଟ୍ ବା ଶସ୍ୟ କବକ ରୋଗ: (Ergot of Bajar- *Claviceps fusiformis*)

ଏହି ରୋଗ ଗଛର କେଣ୍ଡାରେ ହୋଇଥାଏ । ଦାନା ଉପରେ ଲହୁଣି ଓ ନାରଙ୍ଗି ରଙ୍ଗର ପାଣିବୁନ୍ଦା ପରି ଲାଗିଥାଏ । ପରେ କବକଗୁଡିକ ସୂତା ପରି ଦାନା ଉପରେ ବାନ୍ଧି ହୋଇଯାଏ । ଏହା ଦେଖିବାକୁ କଳା, ଧଳା ଓ ଗୋଲାପି ରଙ୍ଗର । ଆକ୍ରାନ୍ତ ଦାନା ଫୁଲିଯାଏ ଓ ନରମା ହୋଇଯାଏ । ଏହା ଖାଦ୍ୟ ଉପଯୋଗୀ ହୁଏ ନାହିଁ ।

(୬) ବାଜାରାର ସ୍ମଟ୍ ରୋଗ: (Smut Disease of Bajra- *Tolyposporium penicillariae*)

ଏହି ରୋଗ ଗଛର କେଣ୍ଡାରେ ଦେଖାଯାଏ । ସଂକ୍ରମିତ ଦାନା ସାଧାରଣ ଦାନାଠାରୁ ଆକାରରେ ବଡ଼ ହୁଏ ଓ ଗାଢ ସବୁଜରୁ ନାରଙ୍ଗି ଓ କଳା ପଡ଼ିଯାଏ । ଆକ୍ରାନ୍ତ ଦାନା ଖାଦ୍ୟ ଅନୁପଯୋଗୀ ହୁଏ ।

**ସମନ୍ୱିତ ରୋଗ ପୋକ ପରିଚାଳନା**

(୧) ଚାଷ ପ୍ରଣାଳୀ

➢ ଗଭୀର ଭାବରେ ଖରାଟିଆ ଚାଷ କରିବା ଦ୍ୱାରା କର୍ତ୍ତକ କୀଟର କୋଷା, ଝିଣ୍ଟିକାର ଅଣ୍ଡା ପଦାକୁ ବାହାରି ଆସେ ଓ ଖରା ତଥା ପକ୍ଷୀମାନଙ୍କ ଦ୍ୱାରା ନଷ୍ଟ ହୋଇଯାଏ ।

➢ ହିଡ଼କୁ କଡି କରିବା ଦ୍ୱାରା ଅଣ୍ଡାଗୁଡିକ ନଷ୍ଟ ହୋଇଯାଆନ୍ତି ଓ ପକ୍ଷୀମାନଙ୍କ ଶିକାର ହୁଅନ୍ତି ।

➢ ପୂର୍ବ ଫସଲର ମୂଳ ଓ ଅବଶିଷ୍ଟାଂଶ ଚାଷ କରି ନଷ୍ଟ କରିଦିଅନ୍ତୁ ।

➢ କ୍ଷେତରୁ ଅନାବନା ଘାସ ଓ ଅନ୍ୟାନ୍ୟ ଗଛ ସଫା କରିଦିଅନ୍ତୁ ।

➢ ଧାଡ଼ି ବୁଣା ବା ଧାଡ଼ି ରୁଆ କରିବା ଦ୍ୱାରା ବର୍ଗ ମିଟର ପ୍ରତି ଗଛ ସଂଖ୍ୟା ଠିକ୍ ରହେ ଓ ରୋଗ ପୋକ କମ୍ ହୁଏ ତେଣୁ ସବୁବେଳେ ଧାଡ଼ି ବୁଣା ଓ ଧାଡ଼ି ରୁଆ କରନ୍ତୁ ।

➢ ଅଧିକ ଅମଳକ୍ଷମ, ରୋଗ ପୋକ ସହଣୀ ଶକ୍ତି ଓ ପ୍ରତିରୋଧି କିସମ ବ୍ୟବହାର କରନ୍ତୁ ।

| ଗୌଣ ଶସ୍ୟ | କିସମ | ରୋଗ/ପୋକ ପ୍ରତିରୋଧ କ୍ଷମତା |
|---|---|---|
| ମାଣ୍ଡିଆ | ଶୁଭ୍ରା | ମୂଳ ସଢା, ମହିଷା ରୋଗ ଓ ପତ୍ରାଚ୍ଛାଦ ପୋଡ଼ା ରୋଗ ପ୍ରତିରୋଧି |
| | ଭୈରବୀ | ମହିଷା ଓ କାଣ୍ଡବିନ୍ଧା ପୋକ ପ୍ରତିରୋଧି |
| | ଚିଲିକା | କାଣ୍ଡବିନ୍ଧା ପୋକ ପ୍ରତିରୋଧି |
| | କାଳୁଆ | କାଣ୍ଡବିନ୍ଧା ପୋକ ପ୍ରତିରୋଧି |
| | ଭି.ଏଲ୍ ମାଣ୍ଡୁଆ/୩୭୯ | ବେକ ଓ ଆଙ୍ଗୁଳି ମହିଷା ପ୍ରତିରୋଧି |
| | ସି.ଏଫ୍.ଏମ୍.ସି ୧ (ଇନ୍ଦ୍ରାବତି) | ବେକ ଓ ଆଙ୍ଗୁଳି ମହିଷା ପ୍ରତିରୋଧି |
| | ସି.ଏଫ୍.ଏମ୍.ସି ୨ (ଗିରା) | ମହିଷା ଓ କାଣ୍ଡବିନ୍ଧା ପୋକ ପ୍ରତିରୋଧି |
| ବାଜରା | ଏଚ୍.ଏଚ୍.ବି-୬୭ | ଅନେକ ରୋଗ ପୋକ ପ୍ରତିରୋଧି |
| ଜୁଆର | ଏମ୍-୩୫-୧ | କାଣ୍ଡ ମାଛି ନିରୋଧକ |
| | ଆଇ.ସି.ଏସ୍.ଭି-୭୪୫ | କାଣ୍ଡ ମାଛି ନିରୋଧକ |

➢ ଅନୁମୋଦିତ ପରିମାଣର ଯବକ୍ଷାରଜାନ: ଫସଫରସ: ପଟାସ ସାର ପ୍ରୟୋଗ କରନ୍ତୁ । ଜମିରେ ଆଜୋଟୋବ୍ୟାକ୍ଟର, ପିଏସ୍‌ବି ପରି ଜୀବାଣୁ ସାର, ସଢା କମ୍ପୋଷ୍ଟ, ଜିଆଖତ, ଜୀବାମୃତ ପ୍ରୟୋଗ କରି ଚାଷ କରନ୍ତୁ । ଉଇ ନ ହେବା ପାଇଁ ଶେଷ ଓଡ଼ ଚାଷ ସମୟରେ ଏକର ପ୍ରତି ୧ କ୍ୱିଣ୍ଟାଲ ନିମ ପିଡ଼ିଆ ମାଟିରେ ମିଶାନ୍ତୁ ।

➢ ବିହନକୁ ବିଶୋଧନ କରନ୍ତୁ, ଏଥିପାଇଁ ଜୈବିକ ପ୍ରଣାଳୀକୁ ଆପଣାନ୍ତୁ ।

(କ) ମହିଷା, ପତ୍ରଚିତା, ପତ୍ରପୋଡା ଆଦି ରୋଗରୁ ଫସଲକୁ ରକ୍ଷା କରିବା ପାଇଁ ପ୍ରତି କିଲୋଗ୍ରାମ୍ ବିହନରେ ୧୦ଗ୍ରାମ୍ ସୁଡୋମୋନାସ୍ ଫ୍ଲୋରୋସେନ୍‌ସ ୦.୫% ଡବ୍ଲୁ.ପି. ନେଇ ଆବଶ୍ୟକ ପରିମାଣର ପାଣି

ମିଶାଇ ଏହାକୁ ବିହନରେ ଗୋଳାଇ ଦିଅନ୍ତୁ ଯେପରି ବିହନ ଉପରେ ଏକ ଆସ୍ତରଣ ରହିଯିବ ।

(ଖ) ପାଦ ସଢା ଓ ମୂଳ ସଢା ରୋଗରୁ ଫସଲକୁ ରକ୍ଷା କରିବା ପାଇଁ ପ୍ରତି କିଲୋଗ୍ରାମ୍ ବିହନରେ ଟ୍ରାଇକୋଡର୍ମା ହର୍ଜିଆନମ୍ ୨% ଡବ୍ଲୁ.ପି., ୨୦ଗ୍ରାମ୍ ମିଶାଇ ବିହନକୁ ବିଶୋଧନ କରନ୍ତୁ ।

ଏହି ଜୈବିକ ଫର୍ମୁଲେସନ ନ ମିଳିଲେ

(କ) ଗୋମୂତ୍ର ଓ ପାଣି ୧:୫ ଅନୁପାତରେ ମିଶାଇ ଏହି ଦ୍ରବଣରେ ବିହନକୁ ଅଧଘଣ୍ଟା ଭିଜାଇ ବିଶୋଧନ କରନ୍ତୁ ।

(ଖ) ପ୍ରତି କି.ଗ୍ରା. ବିହନରେ ୨୦୦ ମି.ଲି. ବୀଜାମୃତ ଗୋଳାଇ ବିହନକୁ ବିଶୋଧନ କରନ୍ତୁ ।

ଠିକ୍ ସମୟରେ ବୁଣିବା ଓ ରୋଇବା କାମ କରନ୍ତୁ ।

(୨) ଯାନ୍ତ୍ରିକ ପ୍ରଣାଳୀ

➢ ଏକର ପ୍ରତି ଗୋଟିଏ ଆଲୋକ ଯନ୍ତା ବସାଇ କାଣ୍ଡବିନ୍ଧା ପୋକ, ଲୋମସ ସଂବାଳୁଆମାନଙ୍କ ମଥିଗୁଡିକୁ ମାରି ଦିଅନ୍ତୁ ।

➢ ହାତରେ ଆକ୍ରାନ୍ତ ପତ୍ର ଓ ଥୋପକୁ ସଂଗ୍ରହ କରି ନଷ୍ଟ କରନ୍ତୁ ।

➢ ଏକର ପ୍ରତି ୧୦ଟି ଝାଟି ବା କଣି ବାଉଁଶ ପୋତି ପକ୍ଷୀ ଆଶ୍ରୟସ୍ଥଳ ସୃଷ୍ଟି କରନ୍ତୁ ।

➢ ଏକର ପ୍ରତି ୧୦-୧୨ଟି ଫେରୋମୋନ୍ ଯନ୍ତା ବସାଇ କାଣ୍ଡବିନ୍ଧା ପୋକର ଅଣ୍ଡିରା ପୋକମାନଙ୍କୁ ଏଥିରେ ଧରି ମାରିଦିଅନ୍ତୁ ।

(୩) ଜୈବିକ ପ୍ରଣାଳୀ

ଫସଲରେ ଦେଖାଯାଉଥିବା ଇନ୍ଦ୍ରଗୋପୀ ଭୃଙ୍ଗ, ବୁଢିଆଣୀ, ବାଘୁଆ କର୍କି, ସରୁ କର୍କି, ସିର୍‌ଫିଡ୍ ମାଛି ଆଦି ଉପକାରୀ ପରଭୋଜୀ ଓ ପରାଶ୍ରୟୀ ପୋକ ଦେଖାଯାଆନ୍ତି । ଏମାନେ ଜଉପୋକ, ସଂବାଳୁଆ, କାଣ୍ଡବିନ୍ଧା ପୋକର ଅଣ୍ଡାକୁ ଓ ଶୂକକୁ ଖାଇଯାଆନ୍ତି । ତେଣୁ ଏମାନଙ୍କ ସଂରକ୍ଷଣ କରନ୍ତୁ ।

କାଣ୍ଡବିନ୍ଧା ପୋକର ନିୟନ୍ତ୍ରଣ ପାଇଁ ଏକର ପ୍ରତି ୨୦,୦୦୦ ଟ୍ରାଇକୋଗ୍ରାମା ଜାପୋନିକମ୍ ଅଣ୍ଡା (୧ଟି ଟ୍ରାଇକୋ କାର୍ଡ଼) ଲାଗ ଲାଗ ୩ ସପ୍ତାହ ଜମିରେ ଲଗାନ୍ତୁ ।

ଶୋଷକ ଓ କାଣ୍ଡବିନ୍ଧା ପୋକ ନିୟନ୍ତ୍ରଣ ପାଇଁ ୫ ଶତାଂଶ ନିମ ମଞ୍ଜି ଉଦ୍ଧୃତାଂଶ ପ୍ରୟୋଗ କରି ଶୋଷକ ଓ କାଣ୍ଡବିନ୍ଧା ପୋକ ନିୟନ୍ତ୍ରଣ କରନ୍ତୁ ।

ବଜାରରେ ନିମ ତେଲ ଆଧାରିତ ୦.୦୩% (୩୦୦ପି.ପି.ଏମ୍.)ର ଆଜାଡିରାକ୍ଟିନ୍ ଥିବା ବିଷ ଏକର ପ୍ରତି ୪୦୦ ମି.ଲି ୨୦୦ ଲିଟର ପାଣିରେ ମିଶାଇ ସନ୍ଧ୍ୟା ପୂର୍ବରୁ ସିଞ୍ଚନ କଲେ କାଣ୍ଡବିନ୍ଧା ପୋକ ନିୟନ୍ତ୍ରଣ ହୋଇଥାଏ ।

ଆଗ୍ନେୟାସ୍ତ୍ର, ନିମାସ୍ତ୍ର, ବ୍ରହ୍ମାସ୍ତ୍ର ପ୍ରୟୋଗ କରି କାଣ୍ଡବିନ୍ଧା, ଶୋଷକ ଓ ପତ୍ରଖିଆ ପୋକମାନଙ୍କୁ ନିୟନ୍ତ୍ରଣ କରାଯାଇପାରେ ।

**ଆଗ୍ନେୟାସ୍ତ୍ର**

ଏକ ପ୍ଲାଷ୍ଟିକ ଡ୍ରମ୍ ନିଅନ୍ତୁ । ସେଥିରେ ୧୦ଲିଟର ଗୋମୂତ୍ର ଢାଳନ୍ତୁ । ୧ କି.ଗ୍ରା. ଧୂଆଁପତ୍ରକୁ ଛେଚି ଏହାର ମଣ୍ଡକୁ ମିଶାନ୍ତୁ । ଏହାପରେ ସେଥିରେ ୫୦୦ଗ୍ରାମ୍ କଞ୍ଚାଲଙ୍କା ଓ ୫୦୦ଗ୍ରାମ୍ ରସୁଣକୁ ବାଟି ପକାଇ ଭଲ ଭାବରେ ବାଡ଼ି ସାହାଯ୍ୟରେ ଗୋଳାନ୍ତୁ । କିଛି ସମୟ ପରେ ସେହି ମିଶ୍ରଣରେ ୫ କି.ଗ୍ରା. ନିମ ପତ୍ରକୁ ଛେଚି ଏହାର ମଣ୍ଡକୁ ପକାଇ ଭଲ ଭାବରେ ଗୋଳାନ୍ତୁ । ଏହି ମିଶ୍ରଣକୁ ୩୦ ମିନିଟ୍ ଲେଖାଏଁ ପ୍ରତି ୧ଘଣ୍ଟା ବ୍ୟବଧାନରେ ଫୁଟାନ୍ତୁ । ମିଶ୍ରଣଟି ଥଣ୍ଡା ହେଲାପରେ ଗୋଟିଏ ପତଳା କପଡ଼ାରେ ଛାଣି ୨୪ଘଣ୍ଟା ରଖନ୍ତୁ ଏବଂ ଡ୍ରମ୍‌ର ମୁହଁକୁ ଭଲ ଭାବରେ ବନ୍ଦ କରିଦିଅନ୍ତୁ ।

ଏକ ଲିଟର ଆଗ୍ନେୟାସ୍ତ୍ର ୫୦ଲିଟର ପାଣିରେ ମିଶାଇ ସନ୍ଧ୍ୟା ପୂର୍ବରୁ ପତ୍ର ସିଞ୍ଚନ କରନ୍ତୁ ।

**ବ୍ରହ୍ମାସ୍ତ୍ର**

ଏକ ପ୍ଲାଷ୍ଟିକ୍ ଡ୍ରମ୍ ନିଅନ୍ତୁ । ସେଥିରେ ୧୦ଲିଟର ଗୋମୂତ୍ର ଢାଳନ୍ତୁ, ୩ କି.ଗ୍ରା. ନିମ ପତ୍ରକୁ ଛେଚି ଏହାର ମଣ୍ଡକୁ ମିଶାନ୍ତୁ । ଏହାପରେ ସେଥିରେ ୨କି.ଗ୍ରା. ଆତ ପତ୍ର ମଣ୍ଡ, ୨କି.ଗ୍ରା. ଅମୃତଭଣ୍ଡା ପତ୍ର ମଣ୍ଡ, ୨କି.ଗ୍ରା. ଡାଳିମ୍ବ ପତ୍ର ମଣ୍ଡ, ୨ କି.ଗ୍ରା. ପିଜୁଳି ପତ୍ର ମଣ୍ଡ ମିଶାଇ ଭଲ ଭାବରେ ବାଡ଼ି ସାହାଯ୍ୟରେ ଗୋଳାନ୍ତୁ । ଏହି ମିଶ୍ରଣକୁ ୩୦ମିନିଟ୍ ଲେଖାଏଁ ପ୍ରତି ୧ଘଣ୍ଟା ବ୍ୟବଧାନରେ ଫୁଟାନ୍ତୁ । ମିଶ୍ରଣଟି ଥଣ୍ଡା ହେଲାପରେ ଗୋଟିଏ ପତଳା କପଡ଼ାରେ ଛାଣି ୨୪ଘଣ୍ଟା ରଖନ୍ତୁ ଏବଂ ଡ୍ରମ୍‌ର ମୁହଁକୁ ଭଲ ଭାବରେ ଘୋଡାଇ ଦିଅନ୍ତୁ ।

ପ୍ରତି ୧ଲିଟର ବ୍ରହ୍ମାସ୍ତ୍ରରେ ୫୦ଲିଟର ପାଣି ମିଶାଇ ସନ୍ଧ୍ୟା ପୂର୍ବରୁ ଜମିରେ ସିଞ୍ଚନ କରନ୍ତୁ ।

**ନିମାସ୍ତ୍ର**

ପ୍ଲାଷ୍ଟିକ ଡ୍ରମ୍‌ରେ ୧୦୦ଲିଟର ପାଣି ନିଅନ୍ତୁ । ସେଥିରେ ୫ଲିଟର ଗୋମୂତ୍ର ଏବଂ ୫ କି.ଗ୍ରା. ଗୋବର ମିଶାଇ ଭଲ ଭାବରେ ଏକ ବାଡ଼ି ସାହାଯ୍ୟ ଗୋଳାନ୍ତୁ । ୫କି.ଗ୍ରା. ନିମ ପତ୍ରକୁ ଭଲ ଭାବରେ ଛେଚି ସେଥିରୁ ମଣ୍ଡ ବାହାର କରି ଡ୍ରମରେ ଥିବା ମିଶ୍ରଣରେ ଭଲ ଭାବରେ ଗୋଳାନ୍ତୁ । ଏହି ମିଶ୍ରଣକୁ ୨୪ଘଣ୍ଟା ରଖନ୍ତୁ । ପତଳା କପଡ଼ାରେ ଛାଣି ପ୍ରୟୋଗ କରନ୍ତୁ ।

(୪) ରାସାୟନିକ ପ୍ରଣାଳୀ: ନିହାତି ଦରକାର ପଡିଲେ ପରିବେଶ ସହାୟକ, ସବୁଜ ତ୍ରିକୋଣ ଚିହ୍ନିତ କୀଟନାଶକ ପ୍ରୟୋଗ କରନ୍ତୁ ।

| **ରୋଗ/ପୋକର ନାମ** | **ଅନୁମୋଦିତ କୀଟନାଶକ** |
|---|---|
| ୧.କାଣ୍ଡବିନ୍ଧା ପୋକ | (୧)କ୍ଲୋରାଣ୍ଟ୍ରାନିଲିପ୍ରୋଲ ୦.୪% ଦାନାଦାର ।<br>ଏହା ଶକ୍ତିଶାଳୀ ଦାନାଦାର ବିଷ । ଏହା ମିଲେଟ୍‌ର କାଣ୍ଡବିନ୍ଧା ପୋକ ଦମନ ପାଇଁ ଏକର ପ୍ରତି ୪ କି.ଗ୍ରା. ହିସାବରେ ପ୍ରୟୋଗ କରନ୍ତୁ ।<br>(୨)କ୍ଲୋରାଣ୍ଟ୍ରାନିଲିପ୍ରୋଲ୍ ୧୮.୫% ଏସ୍.ସି. କାଣ୍ଡବିନ୍ଧା ପୋକ ଦମନ ପାଇଁ ୬୦ରୁ ୮୦ ମି.ଲି. ୨୦୦ଲିଟର ପାଣିରେ ମିଶାଇ ପ୍ରତି ଏକରରେ ପ୍ରୟୋଗ କରନ୍ତୁ ।<br>କିମ୍ବା<br>(୩) ସାଇଣ୍ଟ୍ରାନିଲିପ୍ରୋଲ ୧୮.୫% ଏସ୍.ସି. କାଣ୍ଡବିନ୍ଧା ପୋକ ଦମନ ପାଇଁ ଏକରକୁ ୨୦ମି.ଲି. ହିସାବରେ ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ ।<br>କିମ୍ବା<br>(୪) ଫ୍ଲୁବେଣ୍ଡିଆମାଇଡ୍ ୨୦% ଡବ୍ଲୁ.ଜି. ୮୦ରୁ ୧୦୦ ଗ୍ରାମ୍ ୨୦୦ଲିଟର ପାଣିରେ ମିଶାଇ ପ୍ରତି ଏକରରେ ପ୍ରୟୋଗ କରନ୍ତୁ ।<br>କିମ୍ବା<br>(୫) ଟେଟ୍ରାନିଲିପ୍ରୋଲ ୧୮.୮% ଏସ୍.ସି. ଏକରକୁ ୧୨୦ ମି.ଲି ୨୦୦ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ । |
| ୨. କର୍ତ୍ତକ କୀଟ | କ୍ଲୋରାଣ୍ଟ୍ରାନିଲିପ୍ରୋଲ ୧୮.୫% ଏସ୍.ସି. ୬୦ରୁ ୮୦ମି.ଲି. ଏକର ପ୍ରତି ୨୦୦ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ । |
| ୩. ଜଉ ପୋକ | (୧) ଡାଇଫେନ୍‌ଥୁରନ୍ ୨୫% + ପାଇରିପ୍ରୋକ୍ସିଫେନ୍ ୫% ଏସ୍.ଇ. ଏକର ପ୍ରତି ୪୦୦ମି.ଲି. ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ ।<br>କିମ୍ବା<br>(୨) ବ୍ୟୁପ୍ରୋଫେଜିନ୍ ୨୨% + ଫିପ୍ରୋନିଲ୍ ୩% ଏସ୍.ସି. ୨୦୦ ମି.ଲି. ଏକର ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ । |

କିମ୍ବା

(୩) ଫ୍ଲୋନିକାମାଇଡ୍ ୫୦% ଡବ୍ଲ୍ୟୁ.ଜି. ୬୦ରୁ ୮୦ ଗ୍ରାମ୍ ପ୍ରତି ଏକରରେ ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ ।

କିମ୍ବା

(୪) ସ୍ପାଇରୋଟେଟ୍ରାମେଟ୍ ୧୫.୩୧% ଓ.ଡି. ୧୬୦ ମି.ଲି. ଏକରକୁ ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ ।

୪. ଦିଆଲି ପୋକ — (୧) ସ୍ପାଇରୋଟେଟ୍ରୋମେଟ୍ ୧୫.୩୧% ଓ.ଡି. ୧୬୦ ମି.ଲି ଏକରକୁ ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ ।

(୨) ବ୍ୟୁପ୍ରୋଫେଜିନ୍ ୨୫% ଏସ୍.ସି. ୪୦୦ ମି.ଲି. ଏକର ପ୍ରତି ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ ।

୫. କାଣ୍ଡ ମାଛି — କ୍ଲୋରାଣ୍ଟ୍ରାନିଲିପ୍ରୋଲ୍ ୧୮.୫% ଏସ୍.ସି. ୬୦ରୁ ୮୦ ମି.ଲି. ଏକର ପ୍ରତି ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ ।

୧. **ମହିଷା ରୋଗ** — (୧)ଆଜୋକ୍ସିଷ୍ଟ୍ରୋବିନ୍ ୧୬.୭% + ଟ୍ରାଇସାକ୍ଲାଜୋଲ୍ ୩୩.୩୦% ଏସ୍.ସି. ୨୦୦ ମି.ଲି. ଏକର ପ୍ରତି ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ ।

(୨) ଆଜୋକ୍ସିଷ୍ଟ୍ରୋବିନ୍ ୧୮.୨% + ଡାଇଫେନୋକୋନାଜୋଲ୍ ୧୧.୪% ଏସ୍.ସି. ୨୦୦ମି.ଲି. ଏକର ପ୍ରତି ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ ।

(୩) କ୍ରିସୋକ୍ସିମ୍-ମିଥାଇଲ୍ ୪୦%+ ହେକ୍ସାକୋନାଜୋଲ୍ ୮% ଡବ୍ଲୁ.ଜି. ୨୦୦ମି.ଲି. ଏକର ପ୍ରତି ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରନ୍ତୁ ।

୨. **ସ୍ମଟ୍‌ରୋଗ** — ଟ୍ରିଟ୍ରିକୋନାଜୋଲ ୮୦ + ପାଇରୋକ୍ଲୋଷ୍ଟ୍ରବିନ୍ ୪୦% ଏଫ୍.ସି. ୪୦୦ ମି.ଲି. ବିହନ ବିଶୋଧନ ପାଇଁ ଏକର ପ୍ରତି ଆବଶ୍ୟକ ବିହନରେ ମିଶାଇ ପ୍ରଲେପ ଦିଆଯାଏ ।

(୩) ପାଦସଢ଼ା — ଥାୟୋଫେନେଟ୍ ମିଥାଇଲ ୪୫% + ପାଇରୋକ୍ଲୋଷ୍ଟ୍ରବିନ୍ ୫% ଏଫ୍.ଏସ୍. ୨୦ରୁ ୨୫ ଗ୍ରାମ୍ ପ୍ରତି କି.ଗ୍ରା. ବିହନରେ ଲେପ ଦିଆଯାଏ ।

(୪) ପତ୍ର ଚିତା — ଆଜୋକ୍ସିଷ୍ଟ୍ରୋବିନ୍ ୧୮.୨% + ଡାଇଫେନୋକୋନାଜୋଲ୍ ୧୧.୪% ଏସ୍.ସି. ୨୦୦ ମି.ଲି. ଏକର ପ୍ରତି ୨୦୦ ଲିଟର ପାଣିରେ ମିଶାଇ ପ୍ରୟୋଗ କରାଯାଏ ।

(୫) ବାଜରା — ଟ୍ରିଟିକୋନାଜୋଲ ୮୦% + ପାଇରୋକ୍ଲୋଷ୍ଟ୍ରୋବିନ୍ ୪୦% ଏଫ୍.ଏସ୍. ୪୦୦ ମି.ଲି. ଏକର ପ୍ରତି ବିହନରେ ପ୍ରଲେପ ଦିଆଯାଏ ।

ପ୍ରାକ୍ତନ ଉପକୃଷି ନିର୍ଦ୍ଦେଶକ



❖ ❖ ❖

# ମଣ୍ଡି ମାଧ୍ୟମରେ ମାଣ୍ଡିଆ ବିକ୍ରି ବ୍ୟବସ୍ଥା

**ଐଶକାନ୍ତ ମହାପାତ୍ର**

ଓଡ଼ିଶାର ଆଦିବାସୀ ବହୁଳ ଅଞ୍ଚଳରେ ପୁଷ୍ଟିଶସ୍ୟ ଚାଷର ବେଶ୍ ଆଦର ଓ ଚାହିଦା ବହୁ ଆଦିମ କାଳରୁ ରହିଆସିଛି । ପୁଷ୍ଟିଶସ୍ୟ ଯଥା: ମାଣ୍ଡିଆ, ସୁଆଁ, କାଙ୍ଗୁ , କୋଦ, ବାଜରା, ବିଲସୁଆଁ, ଚିନା ଏବଂ ଜହ୍ନା ଆଦି ପରିବର୍ତ୍ତିତ ଜଳବାୟୁ ସହନଶୀଳ ହେବା ସହ ଉଚ୍ଚ ତାପମାତ୍ରାକୁ ସହଜରେ ସହ୍ୟ କରିପାରନ୍ତି । ଯେହେତୁ ଏହି ଚାଷ କମ୍ ଜଳ ଆବଶ୍ୟକ କରେ, ଯାହା ମରୁଡ଼ି ପରିସ୍ଥିତରେ ଏବଂ ଶୁଷ୍କ ଜମିରେ ଭଲ ଭାବେ ବଢ଼ିବା ସହ ନିଜର ବୃଦ୍ଧି ପାଇଁ କୌଣସି ରାସାୟନିକ ସାର ଆବଶ୍ୟକ କରିନଥାଏ । ଏହି ଚାଷ ଆଦିବାସୀ ଅଞ୍ଚଳର ଚାଷୀମାନଙ୍କ ପାଇଁ ଏକ ବରଦାନ ବୋଲି ବିବେଚନା କରାଯାଇଥାଏ । ‘‘ଆଦିଅନ୍ନ’’ ଭାବେ ପରିଚିତ ଏହି ଶସ୍ୟ ଚାଷ ଉପଯୋଗୀ ଓ ସହଜସାଧ ହେବାସହ ଉତ୍ତମ ସ୍ୱାସ୍ଥ୍ୟକୁ ସୁନିଶ୍ଚିତ କରିବା ସହ ରୋଗ ପ୍ରତିରୋଧକ ଶକ୍ତି ବୃଦ୍ଧି କରିବାରେ ସହାୟକ ହୋଇଥାଏ । ସାଧାରଣତଃ ଓଡ଼ିଶାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳଗୁଡିକ ପାହାଡ଼ିଆ ଓ ସ୍ୱଳ୍ପ ବୃଷ୍ଟିପାତ ଅଞ୍ଚଳ ହୋଇଥିବାରୁ ଏହିସବୁ ଅଞ୍ଚଳରେ ମରୁଡ଼ି ସମସ୍ୟା ଅଧିକ ମାତ୍ରାରେ ଦେଖାଯାଇଥାଏ । ତେଣୁ ଏହିସବୁ ଅଞ୍ଚଳରେ ମାଣ୍ଡିଆ ଚାଷ ବହୁଳ ମାତ୍ରାରେ କରାଯାଇଥାଏ ।



ସବୁଜ ବିପ୍ଳବ ପରେ ସମଗ୍ର ଦେଶରେ ଧାନ ଓ ଗହମ ଚାଷର ଚାହିଦା ଆଶାତୀତ ଭାବେ ବୃଦ୍ଧି ପାଇଥିଲା, ଯାହାକି ଆଦିବାସୀ ଅଞ୍ଚଳରେ ମଧ୍ୟ ଦେଖାଦେଇଥିଲା । ଓଡ଼ିଶାର ଆଦିବାସୀ ଚାଷୀଭାଇ ଓ ଭଉଣୀମାନେ ନିଜର ପାରମ୍ପରିକ ମାଣ୍ଡିଆ ଚାଷରୁ ଦୂରେଇଯାଇ ଧାନ, ତୈଳବୀଜ ଏବଂ ଡାଲିଜାତୀୟ ଚାଷରେ ମନୋନିବେଶ କରିଥିଲେ । ଯେହେତୁ ଏହିସବୁ ଫସଲ ଚାଷ କରିବା ସହ ବିକ୍ରି କରିବାର ସୁଯୋଗ ସୁଗମ ରହିଥିଲା, ଧୀରେ ଧୀରେ ମାଣ୍ଡିଆ ଚାଷ ଲୁପ୍ତପ୍ରାୟ ହୋଇଆସିଥିଲା ଓ ବହୁତ କମ୍ ଚାଷ ଜମିରେ ସୀମିତ ହୋଇଯାଇଥିଲା ।

ଏହି ଲୁପ୍ତପ୍ରାୟ ଫସଲକୁ ପୁନର୍ଜୀବିତ କରିବା ପାଇଁ ଓଡିଶା ସରକାର ପ୍ରୟାସ କରିଥିଲେ ଏବଂ ଓଡ଼ିଶା ସରକାରଙ୍କ କୃଷି ଓ କୃଷକ ସଶକ୍ତିକରଣ ବିଭାଗ ଦ୍ୱାରା ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ‘‘ଓଡ଼ିଶା ମିଲେଟ୍ସ ମିଶନ’’ର

ଅୟମାରମ୍ଭ ହୋଇଥିଲା । ୨୦୧୭ ମସିହାରେ ୩୦ଟି ବ୍ଲକ୍‌ରେ ଏହି କାର୍ଯ୍ୟକ୍ରମକୁ ଆରମ୍ଭ କରାଯାଇଥିଲା ଏବଂ ପର୍ଯ୍ୟାୟକ୍ରମେ ଏହି ସ୍ୱତନ୍ତ୍ର କାର୍ଯ୍ୟକ୍ରମ ସମସ୍ତ ୩୦ଟି ଜିଲ୍ଲାର ୧୭୭ଟି ବ୍ଲକ୍‌କୁ ସମ୍ପ୍ରସାରିତ କରାଯାଇଛି ।

ଏହି କାର୍ଯ୍ୟକ୍ରମ ଅଧୀନରେ ଖରିଫ ଋତୁରେ ଉତ୍ପାଦିତ ହେଉଥିବା ମାଣ୍ଡିଆକୁ ନିଜର ଆବଶ୍ୟକତା ଏବଂ ବଳକା ମାଣ୍ଡିଆକୁ ଚାଷୀମାନେ ମଣ୍ଡି ମାଧ୍ୟମରେ ସର୍ବନିମ୍ନ ସହାୟକ ମୂଲ୍ୟରେ ବିକ୍ରି କରିପାରୁଛନ୍ତି । ୨୦୧୮ ମସିହାଠାରୁ ରାଜ୍ୟ ଆଦିବାସୀ ଉନ୍ନୟନ ନିଗମ ମାଧ୍ୟମରେ ଓଡ଼ିଶା ମିଲେଟ୍ସ ମିଶନ ଅଧୀନରେ ଥିବା ସମସ୍ତ ବ୍ଲକ୍‌ରେ ଖରିଫ ମାଣ୍ଡିଆ ସଂଗ୍ରହ ପାଇଁ ମଣ୍ଡିର ବ୍ୟବସ୍ଥା କରାଯାଇଆସୁଛି । ଏହି ମାଣ୍ଡିଆ ମଣ୍ଡି ବ୍ୟବସ୍ଥାକୁ ବ୍ୟବସ୍ଥିତ ଢଙ୍ଗରେ ଚଳାଇବା ପାଇଁ ଆଦିବାସୀ ଉନ୍ନୟନ ନିଗମ ଦ୍ୱାରା ବ୍ୟବସ୍ଥା କରାଯାଇଛି, ଯେଉଁଠିକି ଇଛୁକ ଚାଷୀମାନେ ବିକ୍ରି କରିବାକୁ ଥିବା ମାଣ୍ଡିଆର ପରିମାଣ ପଞ୍ଜୀକରଣ କରିବା ସହ ନିଜର ଆବଶ୍ୟକ ପ୍ରମାଣପତ୍ର ଦାଖଲ କରନ୍ତି ଏବଂ ନିଜ ଉତ୍ପାଦର ସଠିକ୍ ମୂଲ୍ୟ ମାଧ୍ୟମରେ ପାଇପାରୁଛନ୍ତି । ଏଥିପାଇଁ ବିଭିନ୍ନ ବ୍ଲକ୍‌ରେ କୃଷକ ଉତ୍ପାଦକ ସଙ୍ଗଠନ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ଫେଡ଼େରେଶନ କିମ୍ବା କୃଷି ସମବାୟ କମିଟି (ଲ୍ୟାମ୍ପସ/ପ୍ୟାକ୍ସ)କୁ ବ୍ଲକ୍‌ସ୍ତରୀୟ ମାଣ୍ଡିଆ ସଂଗ୍ରହକାରୀ ସଂସ୍ଥା ଭାବେ ଜିଲ୍ଲାସ୍ତରୀୟ ମାଣ୍ଡିଆ ସଂଗ୍ରହ କମିଟି (DLPC) ମାଧ୍ୟମରେ ସମ୍ପୃକ୍ତ ଜିଲ୍ଲାର ଜିଲ୍ଲାପାଳଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସରକାରଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ବିଭିନ୍ନ ମାନଦଣ୍ଡ ଆଧାରରେ ଚୟନ କରାଯାଇଥାଏ । ଏହି କମିଟିରେ ଜିଲ୍ଲାପାଳଙ୍କ ସହ ମୁଖ୍ୟ ଜିଲ୍ଲା କୃଷି ଅଧିକାରୀ, ନିର୍ବାଚିତ ଲୋକପ୍ରତିନିଧି ଓ ବିଭିନ୍ନ ବିଭାଗର ଅଧିକାରୀମାନେ ସଦସ୍ୟ ରହିଥାନ୍ତି । ବ୍ଲକ୍‌ସ୍ତରୀୟ ମାଣ୍ଡିଆ ସଂଗ୍ରହକାରୀ ସଂସ୍ଥା ଭାବେ ଚୟନ ହୋଇଥିବା ସଂସ୍ଥାଗୁଡିକ ଅକ୍ଟୋବର ମାସର ଆରମ୍ଭରୁ ବିଭିନ୍ନ ସଚେତନତା କାର୍ଯ୍ୟକ୍ରମ କରି ଚାଷୀମାନଙ୍କୁ କିଣାଯିବାକୁ ଥିବା ମାଣ୍ଡିଆର ସର୍ବୋତ୍କୃଷ୍ଟ ମାନ, ମଣ୍ଡି ହେବା ଥିବା ସ୍ଥାନ, ସମୟ ଏବଂ ଅବଧି ବିଷୟରେ ସଚେତନ କରିବା ସହ ପଞ୍ଜୀକରଣ କରିବାରେ ସହାୟତା କରିଥାନ୍ତି । ସମ୍ପୃକ୍ତ ବ୍ଲକ୍‌ର ସୁଗମକାରୀ ସଂସ୍ଥା (Facilitating Agency), ବ୍ଲକ୍ କୃଷି ଅଧିକାରୀ, ସହକାରୀ କୃଷି ଅଧିକାରୀ ଏବଂ ଅନ୍ୟ କୃଷି ଅଧିକାରୀମାନେ ପ୍ରତ୍ୟକ୍ଷଭାବେ ଏହି ପ୍ରକ୍ରିୟାକୁ ନିରୀକ୍ଷଣ କରିବା ସହ ସମସ୍ତ ପ୍ରକ୍ରିୟାକୁ ସ୍ୱଚ୍ଛ ଓ ସରଳ କରିଥାନ୍ତି ।



ମାଣ୍ଡିଆ ସଂଗ୍ରହ ପାଇଁ ଦରକାର ହେଉଥିବା ବସ୍ତା, ଗୋଦାମଗୃହ, ମଣ୍ଡିରୁ ଗୋଦାମଗୃହ ପର୍ଯ୍ୟନ୍ତ ଆବଶ୍ୟକ ପରିବହନ, ଟିଡ଼ିସିସିଓଏଲ ମାଧ୍ୟମରେ ସମ୍ପୃକ୍ତ ବ୍ଲକ୍‌ର ସଂଗ୍ରହକାରୀ ସଂସ୍ଥାକୁ ଯୋଗାଇ ଦିଆଯାଇଥାଏ । ମଣ୍ଡିରେ ସଂଗ୍ରହକାରୀ ସଂସ୍ଥା ଇଲେକ୍ଟ୍ରୋନିକ୍ସ ଓଜନ ମାପଯନ୍ତ୍ର ସାହାଯ୍ୟରେ ଓଜନ କରି ଚାଷୀମାନଙ୍କୁ କିଣାବିକାର ପ୍ରମାଣପତ୍ର ଦେବା ସହ ୩ଦିନ ମଧ୍ୟରେ ସମ୍ପୃକ୍ତ ଚାଷୀର ନିଜସ୍ୱ ବ୍ୟାଙ୍କ୍ ଖାତାକୁ ଅର୍ଥ ପଠାଯାଇଥାଏ । ଏହି ସମସ୍ତ ପ୍ରକ୍ରିୟା ପାଇଁ ବ୍ଲକ ସଂଗ୍ରହକାରୀ ସଂସ୍ଥାକୁ ସରକାରଙ୍କ ଦ୍ୱାରା ଧାର୍ଯ୍ୟ ସହଭାଗୀ ମୂଲ୍ୟ (Facilitating Cost) ମିଳିଥାଏ ।

| କ୍ରମିକ ସଂ. | ବର୍ଷ | ମାଣ୍ଡିଆ ବିକ୍ରି କରିଥିବା ଚାଷୀଙ୍କ ସଂଖ୍ୟା | ମୋଟ ସଂଗୃହିତ ମାଣ୍ଡିଆ (କ୍ୱିଣ୍ଟାଲ୍) |
|---|---|---|---|
| ୧ | ୨୦୧୮-୧୯ | ୫୭୩୯ | ୧୭, ୯୮୫ |
| ୨ | ୨୦୧୯-୨୦ | ୨୦,୩୫୭ | ୯୪,୭୪୪ |
| ୩ | ୨୦୨୦-୨୧ | ୨୪,୯୪୫ | ୨୦୩୮୮୦ |
| ୪ | ୨୦୨୧-୨୨ | ୪୧,୨୮୬ | ୩,୨୩,୦୧୯ |
| ୫ | ୨୦୨୨-୨୩ | ୫୯,୬୨୧ | ୬,୦୩,୩୪୮ |

**(୨୦୧୮-୧୯ ଖରିଫ ଋତୁରୁ ୨୦୨୨-୨୩ ଖରିଫ ସଂଗ୍ରହ ବର୍ଷ ପର୍ଯ୍ୟନ୍ତ ବିସ୍ତୃତ ବିବରଣୀ)**

ମଣ୍ଡି ମାଧ୍ୟମରେ ମାଣ୍ଡିଆ ସଂଗ୍ରହ କରିବାହେତୁ ମାଣ୍ଡିଆ ଚାଷର ଚାହିଦା କେବଳ ଆଦିବାସୀ ଅଞ୍ଚଳରେ ବଢ଼ିଛି ତାହା ନୁହେଁ ଅଣଆଦିବାସୀ ଅଞ୍ଚଳରେ ମଧ୍ୟ ଆଶାତୀତ ଭାବେ ବୃଦ୍ଧି ପାଇଛି । ଭାରତର ପ୍ରଥମ ରାଜ୍ୟ ଭାବେ ଓଡିଶା ସରକାର ସର୍ବନିମ୍ନ ସହାୟକ ମୂଲ୍ୟ (MSP) ମାଧ୍ୟମରେ ଚାଷୀମାନଙ୍କଠାରୁ ମଣ୍ଡି ମାଧ୍ୟମରେ ମାଣ୍ଡିଆ ସଂଗ୍ରହ କରିଆସୁଛନ୍ତି । ବିଗତ ୫ ବର୍ଷରେ ଧାନ ତୁଳନାରେ ମାଣ୍ଡିଆ ବିକ୍ରିକରି ଚାଷୀମାନେ ଅଧିକ ଅର୍ଥ ଲାଭ କରୁଛନ୍ତି । ବିଗତ ବର୍ଷ ୬ଲକ୍ଷ କ୍ୱିଣ୍ଟାଲ ମାଣ୍ଡିଆ ସଂଗ୍ରହ କରାଯାଇଥିଲା ବେଳେ ଚଳିତ ବର୍ଷ ୮ଲକ୍ଷ କ୍ୱିଣ୍ଟାଲ ମାଣ୍ଡିଆ କିଣା ଯିବାର ଯୋଜନା ରହିଛି । ଏହି ସଂଗୃହିତ ମାଣ୍ଡିଆ ରାସନ୍ କାର୍ଡଧାରୀଙ୍କୁ ୧ ଟଙ୍କା ମୂଲ୍ୟରେ ଯୋଗାଇ ଦିଆଯାଉଛି । ବିଗତବର୍ଷରେ ୧.୧୩ କୋଟି ହିତାଧିକାରୀ ୧୪ଟି ଜିଲ୍ଲାରେ ସୁଲଭ ମୂଲ୍ୟରେ ମାଣ୍ଡିଆ ପାଇପାରିଛନ୍ତି । ଓଡ଼ିଶା ମିଲେଟ୍ସ ମିଶନ ଯୋଜନା ସହାୟତାରେ କେନ୍ଦୁଝର ଏବଂ ସୁନ୍ଦରଗଡ଼ ଜିଲ୍ଲାରେ ୨୦୨୦ ବର୍ଷରୁ ଅଙ୍ଗନୱାଡ଼ି ପ୍ରାକ୍ ବିଦ୍ୟାଳୟମାନଙ୍କରେ ସକାଳ ଜଳଖିଆରେ ମାଣ୍ଡିଆ ଲଡୁ ଯୋଗାଇ ଦିଆଯାଉଛି, ଏହା ଯୋଗୁଁ ୧.୫ଲକ୍ଷ ଶିଶୁ ଉପକୃତ ହେଉଛନ୍ତି । ଓଡ଼ିଶା ସରକାର ସୁଆଁ ଓ କାଙ୍ଗୁ ପାଇଁ ମାନକ ମୂଲ୍ୟ (Benchmark Price) ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ମାଧ୍ୟମରେ ନିରୂପଣ କରିଛନ୍ତି ଏବଂ ମାଣ୍ଡିଆ ବ୍ୟତୀତ ଏହି ଦୁଇ ପ୍ରମୁଖ ପୁଷ୍ଟିଶସ୍ୟ କିଣିବାର ଯୋଜନା ମଧ୍ୟ ରହିଛି । ବର୍ତ୍ତମାନ ଆମେ କହିପାରିବା "ମାଣ୍ଡିଆ ଚାଷ ଯାହାର, କେତେ଼ ସୁଖ ତାହାର" ।

ମାର୍କେଟିଂ ଅଫିସର
ଓଡ଼ିଶା ମିଲେଟ୍ସ ମିଶନ

❖ ❖ ❖



# ଓଡ଼ିଶା ମିଲେଟ୍ସ ମିଶନର ସଫଳ ଯାତ୍ରା

**ଓଡ଼ିଶା ସରକାରଙ୍କ ଏହି ପ୍ରମୁଖ କାର୍ଯ୍ୟକ୍ରମ ରାଜ୍ୟରେ ପୁଷ୍ଟିକର ଏବଂ ଜଳବାୟୁ ଉପଯୋଗୀ ମିଲେଟ୍‌ର ଚାଷ, ଖାଦ୍ୟଥାଳି ଏବଂ ବଜାର ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ।**

ପ୍ରେମ ଚନ୍ଦ୍ର ଚୌଧାରୀ

ଓଡ଼ିଶାରେ ମିଲେଟ୍‌ର ଯଥେଷ୍ଟ ଗୁରୁତ୍ୱ ରହିଛି ଏବଂ ଏହାର ଚାଷ ଶତାବ୍ଦୀ ଧରି ରାଜ୍ୟ କୃଷି ପ୍ରଣାଳୀରେ ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇଆସିଛି । ରାଜ୍ୟର ବିଭିନ୍ନ କୃଷି ଜଳବାୟୁ ମିଲେଟ୍ ଫସଲ ଚାଷ ପାଇଁ ଉପଯୁକ୍ତ । ମିଲେଟ୍ ମଧ୍ୟରେ ମାଣ୍ଡିଆ ପ୍ରମୁଖ ଅଟେ । ଖାଦ୍ୟପେୟ ଚୟନ, ଅର୍ଥକରୀ ଫସଲ ଚାଷ କାରଣ ଏବଂ ଅନ୍ୟାନ୍ୟ ଶସ୍ୟର ଅଧିକ ଅମଳକ୍ଷମ କିସମ ଚାଷ ଯୋଗୁଁ ପୁଷ୍ଟିଶସ୍ୟ ଚାଷରେ ଏକ ଉଲ୍ଲେଖନୀୟ ହ୍ରାସ ଘଟିଥିଲା ।

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ମାର୍ଗଦର୍ଶନରେ ଓଡ଼ିଶା ସରକାର ରାଜ୍ୟରେ ମିଲେଟ୍‌ର ପୁନରୁଦ୍ଧାର ପାଇଁ ରଣନୀତି ପ୍ରସ୍ତୁତ କରିଛନ୍ତି । ଏହି ପରିପ୍ରେକ୍ଷୀରେ ୨୦୧୬ ମସିହାରେ ନବକୃଷ୍ଣ ଚୌଧୁରୀ ସେଣ୍ଟର ଫର ଡେଭଲପମେଣ୍ଟ ଷ୍ଟଡିଜ୍, ରିଭାଇଟାଲାଇଜିଂ ରେନଫେଡ଼ ଏଗ୍ରିକଲଚର ନେଟ୍‌ୱାର୍କ ଏବଂ ଆଶା(ASHA) ସଂସ୍ଥାଗୁଡ଼ିକର ମିଳିତ ମଞ୍ଚର ଏକ ବହୁ ଭାଗିଦାରୀ ପରାମର୍ଶ କାର୍ଯକ୍ରମ ଆୟୋଜନ କରାଯାଇଥିଲା । ଏହାଦ୍ୱାରା ୨୦୧୭ ବର୍ଷରେ ଓଡ଼ିଶା ମିଲେଟ୍ସର ପ୍ରୋତ୍ସାହନ ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା । ଯାହାକି ଓଡ଼ିଶା ମିଲେଟ୍ସ ମିଶନ୍ ନାମରେ ନାମିତ ହୋଇଥିଲା । ଏହା ଓଡ଼ିଶା ସରକାରଙ୍କ କୃଷି ଏବଂ କୃଷକ ସଶକ୍ତିକରଣ ବିଭାଗ ଅଧୀନରେ ପ୍ରମୁଖ କାର୍ଯ୍ୟକ୍ରମରେ ପରିଣତ ହୋଇଥିଲା । ଏହି କାର୍ଯ୍ୟକ୍ରମ ପୁଷ୍ଟିକର ଶସ୍ୟର ଉନ୍ନତ ଉତ୍ପାଦନ, ସ୍ଥାନୀୟ ବ୍ୟବହାର, ସର୍ବନିମ୍ନ ସହାୟକ ମୂଲ୍ୟରେ କ୍ରୟ ଏବଂ ସାଧାରଣ ବଣ୍ଟନ ବ୍ୟବସ୍ଥା ଉପରେ ଧ୍ୟାନ ଦେଇଥାଏ । ୨୦୧୭-୧୮ ବର୍ଷରେ, ୭ଟି ଜିଲ୍ଲାର ୩୦ଟି ବ୍ଲକ୍‌ରେ ଓଡ଼ିଶା ମିଲେଟ୍ସ ମିଶନ୍ ସଫଳତାର ସହ କାର୍ଯ୍ୟକାରୀ ହୋଇଥିଲା । ପରବର୍ତ୍ତୀ ସମୟରେ, ୨୦୨୨-୨୩ ବର୍ଷରେ, ୧୯ଟି ଜିଲ୍ଲାର ୧୪୩ଟି ବ୍ଲକ୍‌କୁ ମିଲେଟ୍ ମିଶନ ସମ୍ପ୍ରସାରିତ ହୋଇଥିଲା । ସମ୍ପ୍ରତି ଏହି କାର୍ଯ୍ୟକ୍ରମ ଓଡ଼ିଶାର ସମସ୍ତ ୩୦ଟି ଜିଲ୍ଲାର ୧୭୭ଟି ବ୍ଲକ୍‌ରେ କାର୍ଯ୍ୟକାରୀ ହେଉଛି ।

### କାର୍ଯ୍ୟକ୍ରମର ଉଦ୍ଦେଶ୍ୟ

ଏହି କାର୍ଯ୍ୟକ୍ରମର ଉଦ୍ଦେଶ୍ୟ ହେଉଛି ଓଡ଼ିଶାରେ ମିଲେଟ୍ ଉତ୍ପାଦନ ଏବଂ ବ୍ୟବହାରର ବିଭିନ୍ନ ଦିଗକୁ ଯଥେଷ୍ଟ ଉନ୍ନତ କରିବା । ଏକ ପ୍ରମୁଖ ଲକ୍ଷ୍ୟ ହେଉଛି ଉଭୟ ସହରାଞ୍ଚଳ ଏବଂ ଗ୍ରାମାଞ୍ଚଳରେ ମିଲେଟ୍ ଖାଦ୍ୟ ସଂସ୍କୃତିର ପୁନଃ ମୂଲ୍ୟାୟନ କରି ମୌଳିକ ସ୍ତରରୁ ମିଲେଟ୍‌ର ଘରୋଇ ବ୍ୟବହାରକୁ ୨୫ ଶତାଂଶ ବୃଦ୍ଧି କରିବା । ଅନ୍ୟ ଏକ ଲକ୍ଷ୍ୟ ହେଉଛି ମିଲେଟ୍ ବିବିଧତା ରକ୍ଷା କରିବା ପାଇଁ ଗୋଷ୍ଠୀଭିତ୍ତିକ ବିହନ ପ୍ରଣାଳୀ ମାଧ୍ୟମରେ ଭୂ-ପ୍ରଜାତିର ସଂରକ୍ଷଣ ଏବଂ ପ୍ରୋତ୍ସାହନ ଉପରେ ଗୁରୁତ୍ୱ ଦେବା । ମିଲେଟ୍ ଆଧାରିତ ଫସଲ ପ୍ରଣାଳୀର ଉତ୍ପାଦକତାରେ ଉନ୍ନତି ଆଣିବା ପାଇଁ

ମିଲେଟ୍ ଉତ୍ପାଦନ ସହିତ ଅମଳ ପରବର୍ତ୍ତୀ ଏବଂ ପ୍ରାଥମିକ ପ୍ରକ୍ରିୟାକରଣ ଉଦ୍ୟୋଗଗୁଡ଼ିକର ପ୍ରୋତ୍ସାହନ ଅନ୍ତର୍ଭୁକ୍ତ ହୋଇଥାଏ । ଲକ୍ଷ୍ୟ ହେଉଛି ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳରେ ମିଲେଟ୍‌ର ମୂଲ୍ୟଯୁକ୍ତ ବ୍ୟବସାୟକୁ ଉତ୍ସାହିତ କରିବାକୁ ଚେଷ୍ଟା କରିବା । ସାଧାରଣ ବଣ୍ଟନ ବ୍ୟବସ୍ଥା, ପୁଷ୍ଟିକର କାର୍ଯ୍ୟକ୍ରମ, ମଧ୍ୟାହ୍ନ ଭୋଜନ, ଆବାସିକ କେନ୍ଦ୍ର ଏବଂ ଅନ୍ୟାନ୍ୟ ଯୋଜନାରେ ମିଲେଟ୍‌ଗୁଡ଼ିକୁ ଅନ୍ତର୍ଭୁକ୍ତ କରିବାକୁ ଏକ ଅତିରିକ୍ତ ଲକ୍ଷ୍ୟ ରଖାଯାଇଛି । ଏଥିସହ କୃଷକ ଏବଂ ଉଦ୍ୟୋଗୀମାନଙ୍କ ପାଇଁ ସୁଯୋଗ ସୃଷ୍ଟି କରିବାକୁ ମିଲେଟ୍ ବଜାର ଏବଂ ଓଡ଼ିଶାରୁ ମିଲେଟ୍ ଆଧାରିତ ଉତ୍ପାଦଗୁଡ଼ିକର ରପ୍ତାନିରେ ସୁବିଧା କରିବାକୁ ଏହି କାର୍ଯ୍ୟକ୍ରମର ଉଦ୍ଦେଶ୍ୟ ରହିଛି । ଏହା ସହିତ ସମାନ ଭାବେ ପ୍ରୋତ୍ସାହିତ କରିବା ଏବଂ ଆଦିବାସୀ ଅଞ୍ଚଳର କୃଷକମାନଙ୍କୁ ଯଥେଷ୍ଟ ପ୍ରୋତ୍ସାହନ ଯୋଗାଇବାର ଆଭିମୁଖ୍ୟ ରହିଛି ।

**ବହୁମୁଖୀ ରଣନୀତି**

ଓଡ଼ିଶା ମିଲେଟ୍ସ ମିଶନର ସଫଳତାକୁ ବ୍ୟାପକ ଏବଂ ବହୁମୁଖୀ ରଣନୀତି ସହିତ ଦର୍ଶାଯାଇପାରିବ । କେବଳ ଉତ୍ପାଦନକୁ ପ୍ରୋତ୍ସାହିତ କରିବା ସମେତ ବ୍ୟବହାର, ବିପଣନ, ପ୍ରକ୍ରିୟାକରଣ ଏବଂ ଗୋଷ୍ଠୀ ଯୋଗଦାନ ଉପରେ ଗୁରୁତ୍ୱ ଦେଇ ମୂଲ୍ୟ ଶୃଙ୍ଖଳ ଭଳି ପଦକ୍ଷେପ ଗ୍ରହଣ କରାଯାଉଛି ।



(ମାଣ୍ଡିଆ ଚାରା ରୁଆ କାର୍ଯ୍ୟ ଚାଲିଛି)

**ଉତ୍ପାଦନ ବୃଦ୍ଧି**

ମିଲେଟ୍ ବିହନର ଗୁଣ ଏବଂ ବିବିଧତା ବୃଦ୍ଧି କରିବା ସହିତ ଉତ୍ପାଦକତା ତଥା କୃଷକଙ୍କ ଆୟ ବୃଦ୍ଧି ପାଇଁ ଓଡ଼ିଶା ମିଲେଟ୍ସ ମିଶନ ଉନ୍ନତ କୃଷି କୌଶଳକୁ ପ୍ରୋତ୍ସାହିତ କରୁଛି । ଏହାର ଏକ ଅଂଶ ଭାବେ ନିର୍ଦ୍ଦିଷ୍ଟ ପ୍ରଣାଳୀ ସମାପ୍ତ କରିବା ପରେ ଆର୍ଥିକ ପ୍ରୋତ୍ସାହନ ସିଧାସଳଖ ଚାଷୀଙ୍କ ବ୍ୟାଙ୍କ୍ ଖାତାକୁ ପ୍ରଦାନ କରାଯାଏ । ଏଥିରେ ମୃତ୍ତିକାର ସ୍ୱାସ୍ଥ୍ୟରେ ଉନ୍ନତି ଆଣିବା ପାଇଁ ପର୍ଯ୍ୟାପ୍ତ ପରିମାଣର ଖତ ଏବଂ କମ୍ପୋଷ୍ଟ ପ୍ରୟୋଗ କରିବା, ରୋଗପୋକ ପ୍ରତିହତ କରିବା ପାଇଁ ବିହନ ବିଶୋଧନ କରିବା ଏବଂ ସଘନ ପଦ୍ଧତିରେ ମାଣ୍ଡିଆ ଚାଷ, ଧାଡ଼ି ରୁଆ, ଧାଡ଼ି ବୁଣା ଅନ୍ତର୍ଭୁକ୍ତ । ରୋଗପୋକ ପରିଚାଳନା ପାଇଁ ଜୈବିକ ଦ୍ରବ୍ୟ ବ୍ୟବହାରକୁ ମଧ୍ୟ ଉତ୍ସାହିତ କରାଯାଏ । ସ୍ଥାନୀୟ ଗୋଷ୍ଠୀ ସମ୍ବଳ କର୍ମୀ ଏହି କାର୍ଯ୍ୟକୁ ପ୍ରୋତ୍ସାହିତ କରିବା ପାଇଁ ଗ୍ରାମ୍ୟସ୍ତରରେ ସହାୟତା ପ୍ରଦାନ କରୁଥିବାବେଳେ ସୁଗମକାରୀ ସଂସ୍ଥା ଅଗ୍ରଗତିକୁ ନିରୀକ୍ଷଣ କରିଥାନ୍ତି । ସଘନ ମାଣ୍ଡିଆ ଚାଷ, ଧାଡ଼ି ରୁଆ, ଧାଡ଼ି ବୁଣା ଭଳି ସମସ୍ତ କାର୍ଯ୍ୟକ୍ରମକୁ ସଫଳତାର ସହିତ ସମାପ୍ତ କରିବା ପାଇଁ କୃଷକମାନଙ୍କୁ ସିଧାସଳଖ ଲାଭ ହସ୍ତାନ୍ତର ମାଧ୍ୟମରେ ଆର୍ଥିକ ସହାୟତା ପ୍ରଦାନ କରାଯାଏ । କୃଷକମାନେ ପାଞ୍ଚ ବର୍ଷ ପାଇଁ ପ୍ରୋତ୍ସାହନ ପାଇବାକୁ ଯୋଗ୍ୟ ହୋଇଥାନ୍ତି ।

ଓଡ଼ିଶା ମିଲେଟ୍ସ ମିଶନ ନିଶ୍ଚିତ କରିଛି ଯେ ଚାଷୀମାନେ ମିଲେଟ୍ ଉତ୍ପାଦନ ବୃଦ୍ଧି ପାଇଁ ଆବଶ୍ୟକୀୟ ସମସ୍ତ କୃଷି ସାମଗ୍ରୀ ଏବଂ ଯନ୍ତ୍ରପାତି ପାଇପାରିବେ । ଉନ୍ନତ, ଅଧିକ ଅମଳକ୍ଷମ ମିଲେଟ୍ସ ବିହନର କିସମ କୃଷକମାନଙ୍କ ମଧ୍ୟରେ ବଣ୍ଟନ କରାଯାଏ । ବିହନ ବିଶୋଧନ, ଖାଦ୍ୟ ପାଇଁ ଜୈବସାର ଏବଂ ଅନ୍ୟାନ୍ୟ ଜୈବ ସାମଗ୍ରୀ ପ୍ରସ୍ତୁତି ଉପରେ କୃଷକମାନଙ୍କୁ ତାଲିମ ଦିଆଯାଉଛି । ପୋଷଣକ୍ଷମ କୃଷି ପଦ୍ଧତି ବ୍ୟବହାର କରି ପାରମ୍ପରିକ ମିଲେଟ୍ ଫସଲର ଉତ୍ପାଦନ କ୍ଷମତା ବୃଦ୍ଧି କରିବାକୁ କୃଷକମାନଙ୍କୁ ସକ୍ଷମ କରାଯାଉଛି । ଏଥିସହ ନାମମାତ୍ର କୃଷକଙ୍କ ସ୍ୱଳ୍ପ ଜମିକୁ ଚିହ୍ନଟ, ଭଡ଼ା ସୂତ୍ରରେ

ଯନ୍ତ୍ରପାତି ଯୋଗାଣ କେନ୍ଦ୍ର ସ୍ଥାପନ କରାଯାଇଛି । ଘାସବଛା ଯନ୍ତ୍ର, ଅମଳ ଯନ୍ତ୍ର ଇତ୍ୟାଦି ଯନ୍ତ୍ରପାତିଗୁଡ଼ିକ ପାଇଁ ପୁଞ୍ଜି ବିନିଯୋଗ କରିବା ପରିବର୍ତ୍ତେ କୃଷକମାନେ ଆବଶ୍ୟକତା ଅନୁଯାୟୀ ଭଡ଼ାରେ ବ୍ୟବହାର କରିପାରିବେ । ଏହା କୃଷକମାନଙ୍କର ଆର୍ଥିକ ପ୍ରତିବନ୍ଧକକୁ ଦୂର କରିବା ସହିତ କ୍ଷୁଦ୍ରଶସ୍ୟ ପାଇଁ ବିଶେଷ କରି ଆଦିବାସୀ ଅଞ୍ଚଳରେ କୃଷିଯାନ୍ତ୍ରିକୀକରଣକୁ ସୁଲଭ ଏବଂ ସୁବିଧାଜନକ କରିପାରିଛି ।

୨୦୧୭-୧୮ବର୍ଷରେ, ସମୁଦାୟ ୮୦୩୦ଜଣ କୃଷକ ୭ ଜିଲ୍ଲାର ୩୦ଟି ବ୍ଲକରେ ଥିବା ୩,୩୩୩ ହେକ୍ଟର ଜମିରେ ମିଲେଟ୍ ଚାଷରେ ନିୟୋଜିତ ହୋଇଥିଲେ । ୨୦୨୨-୨୩ ସୁଦ୍ଧା ମିଲେଟ୍ ଚାଷରେ ସମ୍ପୃକ୍ତ କୃଷକଙ୍କ ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇ ୧,୭୨,୩୬୭ରେ ପହଞ୍ଚିଛି । ୧୯ଟି ଜିଲ୍ଲାର ୧୪୩ଟି ବ୍ଲକ୍‌ରେ ୭୯,୫୫୬ ହେକ୍ଟର ଚାଷ ଜମିରେ ମିଲେଟ୍ ଚାଷ କରାଯାଇଛି । ୨୦୨୩-୨୪ ଶେଷ ସୁଦ୍ଧା ୩୦ଟି ଜିଲ୍ଲାର ୧୭୭ଟି ବ୍ଲକ୍‌ରେ ୩ଲକ୍ଷ ୫୦ହଜାର ଚାଷୀଙ୍କୁ ମିଲେଟ୍ ଚାଷ କରିବାପାଇଁ ଲକ୍ଷ୍ୟ ରଖାଯାଇଛି ।



(ରାୟଗଡ଼ା ଜିଲ୍ଲାର କଲ୍ୟାଣସିଂପୁର ବ୍ଲକ୍‌ସ୍ଥିତ ଜି.ଖାଟିପାଡୁ ଗ୍ରାମର ଜଣେ କୃଷକ ନିଜ ମାଣ୍ଡିଆ କ୍ଷେତରେ ସାଇକେଲଚାଳିତ ଘାସବଛା ଯନ୍ତ୍ର ବ୍ୟବହାର କରୁଛନ୍ତି)

### ସ୍ଥାନୀୟ ଭୂ-ପ୍ରଜାତିର ସଂରକ୍ଷଣ

ସ୍ଥାନୀୟ ମାଣ୍ଡିଆ ଭୂ-ପ୍ରଜାତି ଚିହ୍ନଟ ତଥା ପ୍ରୋତ୍ସାହିତ କରିବା ପାଇଁ ଓଡ଼ିଶା ମିଲେଟ୍ସ ମିଶନ୍ ପ୍ରୟାସ କରିଛି । ବିଭିନ୍ନ ଭୂ-ପ୍ରଜାତିର ମୂଲ୍ୟାଙ୍କନ ପାଇଁ ଆଦିବାସୀ ଜିଲ୍ଲାମାନଙ୍କରେ ବହୁ କିସମ ପରୀକ୍ଷା କରାଯାଇଛି । ପରବର୍ତ୍ତୀ ଶୁଦ୍ଧତା ଏବଂ ବହୁ ସ୍ଥାନରେ ପରୀକ୍ଷଣ ଦ୍ୱାରା କୁନ୍ଦ୍ରା ବାଟି, ଲକ୍ଷ୍ମୀପୁର କାଳିଆ, ମାଲ୍ୟବନ୍ତ ମାମି ଏବଂ ଗୁପ୍ତେଶ୍ୱର ଭାରତୀ ପରି ସ୍ଥାନୀୟ ପରିସ୍ଥିତି ପ୍ରତି ଅନୁକୂଳ କିସମ ଚିହ୍ନଟ କରାଯାଇଛି । ଏଗୁଡ଼ିକୁ କୋରାପୁଟ ଏବଂ ମାଲକାନଗିରିରେ ଚାଷ ପାଇଁ ବିକାଶ କରାଯାଇଛି, ଯାହା ଭାରତରେ ଐତିହାସିକ ଅଟେ । ସଠିକ୍ ଡକ୍ୟୁମେଣ୍ଟେସନ୍, ଗୋଷ୍ଠୀର ଅଂଶଗ୍ରହଣ ଏବଂ ବୈଜ୍ଞାନିକ ବୈଧତା ମୂଲ୍ୟବାନ ମିଲେଟ୍ ବିବିଧତାକୁ ସଂରକ୍ଷଣ କରିବାରେ ସକ୍ଷମ ହୋଇଛି । ଭୂ-ପ୍ରଜାତିଗୁଡ଼ିକର ଚିହ୍ନଟ ଯୋଗୁଁ କୃଷକମାନେ ପାରମ୍ପରିକ କିସମ ଚାଷ କରିବା ସଙ୍ଗେ ସଙ୍ଗେ କୃଷି ଜୈବ ବିବିଧତା ସଂରକ୍ଷିତ ହୋଇପାରୁଛି ।



(ମୟୂରଭଞ୍ଜ ଜିଲ୍ଲାର ଏକ ଗ୍ରାମରେ ମହିଳା ଚାଷୀମାନଙ୍କ ଦ୍ୱାରା ପ୍ରସ୍ତୁତ ତରଳ ଜୈବିକ ସାରକୁ ନିଜ ମାଣ୍ଡିଆ କ୍ଷେତରେ ସିଞ୍ଚନ କରୁଛନ୍ତି)

### ଓଡ଼ିଶା ମିଲେଟ୍ସ ମିଶନ ଦ୍ୱାରା ମାଣ୍ଡିଆ କ୍ରୟ ବ୍ୟବସ୍ଥା

ସିଧାସଳଖ କ୍ରୟ କେନ୍ଦ୍ର କିମ୍ବା ମିଲେଟ୍ ମଣ୍ଡି ପ୍ରତିଷ୍ଠା କରାଯାଇଛି, ଯେଉଁଠାରେ କୃଷକମାନେ ମଧ୍ୟସ୍ଥିଙ୍କ ଉପରେ ନିର୍ଭରଶୀଳ ନ ହୋଇ ସରକାରଙ୍କ ସର୍ବନିମ୍ନ ସହାୟକ ମୂଲ୍ୟରେ ଉତ୍ପାଦକୁ ବିକ୍ରି କରିପାରିବେ । ଓଡ଼ିଶା ମିଲେଟ୍ସ ମିଶନ ଅଧୀନରେ ମାଣ୍ଡିଆ କ୍ରୟ ପାଇଁ କୃଷକ ଉତ୍ପାଦକ

ସଂଗଠନ ଏବଂ ସ୍ୱୟଂ ସହାୟକ ଗୋଷ୍ଠୀ ଫେଡେରେସନ୍ ଗ୍ରାମ୍ୟସ୍ତରୀୟ ସଚେତନତା ଅଭିଯାନ କରି କୃଷକମାନଙ୍କୁ ମାଣ୍ଡିଆ ପାଇଁ ସର୍ବନିମ୍ନ ସହାୟକ ମୂଲ୍ୟ ଏବଂ ହାରାହାରି ଗୁଣାତ୍ମକ ମାନ ବିଷୟରେ ଅବଗତ କରିଥାନ୍ତି । ଜିଲ୍ଲାପାଳ ଏବଂ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଅଧକ୍ଷତାରେ ଜିଲ୍ଲାସ୍ତରୀୟ କ୍ରୟ କମିଟି, ପ୍ରାଥମିକ କୃଷି ସମବାୟ ସମିତି, ବୃହତ୍ ବହୁମୁଖୀ ଆଦିବାସୀ ସମବାୟ ସମିତି, କୃଷକ ଉତ୍ପାଦକ ସଂଗଠନ ଏବଂ ସ୍ୱୟଂ ସହାୟକ ଗୋଷ୍ଠୀ ମଣ୍ଡି ସଂଖ୍ୟା, ନାମ ଓ ମଣ୍ଡି ସ୍ଥାନ, କ୍ରୟ ଆରମ୍ଭ ତାରିଖ ସମ୍ବନ୍ଧରେ ନିଷ୍ପତ୍ତି ନେଇଥାନ୍ତି । ଏହାପରେ କୃଷକ ଉତ୍ପାଦକ ସଂଗଠନ ଏବଂ ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକ କୃଷକଙ୍କ ସୁବିଧାକୁ ଦୃଷ୍ଟିରେ ରଖି ଓଡ଼ିଶା ଆଦିବାସୀ ବିକାଶ ସମବାୟ ନିଗମ ସହିତ ପରାମର୍ଶ କରି ଜିଲ୍ଲା ମୁଖ୍ୟ କୃଷି ଅଧିକାରୀଙ୍କୁ ଏହି ବିଷୟରେ ପ୍ରସ୍ତାବ ଦିଅନ୍ତି । ଏହା ଜିଲ୍ଲା କ୍ରୟ କମିଟିରେ ଅନୁମୋଦିତ ହୋଇଥାଏ ।



(ଓଡ଼ିଶା ମିଲେଟ୍ସ ମିଶନ ଅଧିନରେ ରାୟଗଡ଼ା ଜିଲ୍ଲାର ଚୁଡ଼ାଗୁଡ଼ଠାରେ ମାଣ୍ଡିଆ ସଂଗ୍ରହ କାର୍ଯ୍ୟ ଚାଲିଛି)

କୃଷକମାନେ ନିଶ୍ଚିତ ଭାବରେ ପରିଚୟ ପତ୍ର, ବ୍ୟାଙ୍କ୍ ପାସବୁକ୍‌ର ବିବରଣୀ ଏବଂ ଜମି ରେକର୍ଡ ସହିତ ଏକ ପଞ୍ଜୀକରଣ ଫର୍ମ ପୂରଣ କରିବେ ଏବଂ ଏମ୍-ପାସ୍ ପୋର୍ଟାଲରେ ପଞ୍ଜୀକରଣ ପାଇଁ ଏହାକୁ ଏଫପିଓ/ ଏସ୍‌ଏଚ୍‌ଜି ଫେଡେରେସନ୍/ ଲ୍ୟାମ୍ପ୍ସ/ ପ୍ୟାକସରେ ଦାଖଲ କରିବେ । ଏଫପିଓ/ ଏସ୍‌ଏଚ୍‌ଜି ଫେଡେରେସନ୍/ ଲ୍ୟାମ୍ପ୍ସ/ ପ୍ୟାକସରେ ଏମ୍-ପାସ୍ ପୋର୍ଟାଲରେ କୃଷକ ପଞ୍ଜୀକରଣ ଫର୍ମକୁ ଡିଜିଟାଇଜ୍ କରନ୍ତି । ଓଡ଼ିଶା ଆଦିବାସୀ ଉନ୍ନୟନ ସମବାୟ ନିଗମ ଲି (ଟିଡିସିସିଓଏଲ୍)ର ଜିଲ୍ଲା ଅଧିକାରୀମାନେ ସହକାରୀ କୃଷି ଅଧିକାରୀ /ବ୍ଲକ କୃଷି ଅଧିକାରୀମାନଙ୍କ ସହଯୋଗରେ ଜମି ରେକର୍ଡ ଏବଂ ବ୍ୟାଙ୍କ୍ ଖାତା ଯାଞ୍ଚ କରି ବ୍ୟାଙ୍କ ଅନୁଯାୟୀ ରିପୋର୍ଟ ପ୍ରସ୍ତୁତ କରନ୍ତି । ଯାଞ୍ଚ ଉପରେ ଆଧାର କରି ଯେକୌଣସି ସଂଶୋଧନ ଏବଂ ପରିବର୍ତ୍ତନ ପୋର୍ଟାଲରେ ଟିଡିସିସିଓଏଲ୍ ଜିଲ୍ଲା ଅଧିକାରୀଙ୍କ ଦ୍ୱାରା ଅପଡେଟ୍ କରାଯାଇଥାଏ । ଭୂଲେଖ ଡାଟାବେସ୍ ଏବଂ ସମ୍ପୃକ୍ତ ସହକାରୀ କୃଷି ଅଧିକାରୀ/ ବ୍ଲକ୍ କୃଷି ଅଧିକାରୀଙ୍କ ଦ୍ୱାରା ଜମି ରେକର୍ଡଗୁଡିକ ଅଧିକ ପ୍ରମାଣିକୃତ ହୋଇଥାଏ । ଜମି ଓ ବ୍ୟାଙ୍କ୍ ଯାଞ୍ଚ ଶେଷ ହେବାପରେ ପ୍ରତି ଚାଷୀଙ୍କ ବଳକା ଶସ୍ୟର ପରିମାଣ ବିକ୍ରି ପାଇଁ ଅନୁମୋଦନ କରାଯାଏ । ଏହାପରେ କୃଷକମାନେ ମଣ୍ଡିରେ ବିକ୍ରି ପାଇଁ ଅନୁମୋଦିତ ଅତିରିକ୍ତ ପରିମାଣର ଶସ୍ୟ ପାଇଁ ଏକ ଟୋକନ ଗ୍ରହଣ କରନ୍ତି । ମଣ୍ଡିରେ କୃଷକମାନେ ସେମାନଙ୍କର ଉତ୍ପାଦ ଏବଂ ଟୋକନ୍‌କୁ ନିର୍ଦ୍ଦିଷ୍ଟ କ୍ରୟ କେନ୍ଦ୍ରରେ ବିକ୍ରୟ କରିବାକୁ ଉପସ୍ଥାପନ କରନ୍ତି । ମଣ୍ଡିରେ ବିକ୍ରୟ ତାରିଖଠାରୁ ୭୨ଘଣ୍ଟା ମଧ୍ୟରେ କୃଷକଙ୍କ ବ୍ୟାଙ୍କ୍ ଖାତାକୁ ଦେୟ ସ୍ଥାନାନ୍ତର କରାଯାଏ । ମାଣ୍ଡିଆ କ୍ରୟରେ ବହୁ ପରିମାଣରେ ବୃଦ୍ଧି ଘଟିଛି, ଯାହା ୨୦୧୮-୧୯ରେ ୦.୧୭୯ଲକ୍ଷ କ୍ୱିଣ୍ଟାଲରୁ ୨୦୨୨-୨୩ ଆର୍ଥିକ ବର୍ଷରେ ୬.୦୩ ଲକ୍ଷ କ୍ୱିଣ୍ଟାଲକୁ ବୃଦ୍ଧି ପାଇଛି ।

**ସାଧାରଣ ବଣ୍ଟନ ବ୍ୟବସ୍ଥା, ସମନ୍ୱିତ ଶିଶୁ ବିକାଶ ଯୋଜନା ଏବଂ ଛାତ୍ରାବାସରେ ମିଲେଟ୍**

ସମନ୍ୱିତ ଶିଶୁ ବିକାଶ ଯୋଜନାରେ ସକାଳ ଜଳଖିଆରେ ମାଣ୍ଡିଆ ଲଡୁ ବନ କାର୍ଯ୍ୟକ୍ରମ ହେଉଛି ଏକ ପୁଷ୍ଟିକର ଏବଂ ଉତ୍ତମ ଖାଦ୍ୟପେୟ ବ୍ୟବସ୍ଥା । ଅଙ୍ଗନୱାଡ଼ି କେନ୍ଦ୍ରରେ ପିଲାମାନଙ୍କ ପାଇଁ ମିଲେଟ୍ ଆଧାରିତ ସେବା ଉପରେ ଗୁରୁତ୍ୱ ଦେଇ ଓଡ଼ିଶା ମିଲେଟ୍ସ ମିଶନ ମିଲେଟ୍ ବ୍ୟବହାରକୁ ପ୍ରୋତ୍ସାହିତ କରିବା ଏକ ଅବିଚ୍ଛେଦ୍ୟ ଅଙ୍ଗ ।

କେନ୍ଦୁଝର ଏବଂ ସୁନ୍ଦରଗଡ଼ ଜିଲ୍ଲାର ବିଦ୍ୟାଳୟ ପିଲାମାନଙ୍କ ପାଇଁ ଏହା କାର୍ଯ୍ୟକାରୀ ହେଉଛି । ପ୍ରାକ୍-ବିଦ୍ୟାଳୟ ପିଲାମାନଙ୍କ ପାଇଁ ସକାଳ ଜଳଖିଆରେ ମାଣ୍ଡିଆ ଲଡୁର ବଣ୍ଟନ ମାଧ୍ୟମରେ ଆଇସିଡିଏସ ଅଧୀନରେ ଦିଆଯାଉଥିବା ଖାଦ୍ୟର ପୁଷ୍ଟିକର ଗୁଣରେ ଉନ୍ନତି ଆସିଛି । ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ସଦସ୍ୟାଙ୍କ ପାଇଁ ଜୀବିକା ସୁଯୋଗକୁ ପ୍ରୋତ୍ସାହିତ କରୁଛି । ଏହି କାର୍ଯ୍ୟକ୍ରମରେ କେନ୍ଦୁଝରର ୧୩ଟି ବ୍ଲକ୍ ଏବଂ ସୁନ୍ଦରଗଡ଼ ଜିଲ୍ଲାର ୧୭ଟି ବ୍ଲକରେ ୬୦୭୭ ଅଙ୍ଗନୱାଡ଼ି କେନ୍ଦ୍ର ରହିଛି, ଯାହା ୧.୫ଲକ୍ଷ ପ୍ରାକ୍-ବିଦ୍ୟାଳୟର ପିଲାମାନଙ୍କୁ ସେବା ପ୍ରଦାନ କରୁଛି । ଏହି କାର୍ଯ୍ୟକ୍ରମ ପ୍ରଥମେ ଜୁଲାଇ ଏବଂ ଅଗଷ୍ଟ ମାସରେ କେନ୍ଦୁଝରର ସଦର ବ୍ଲକ ଏବଂ ସୁନ୍ଦରଗଡ଼ ଜିଲ୍ଲାର ହେମଗିରି ବ୍ଲକ୍‌ରେ ପାଇଲଟ୍ କାର୍ଯ୍ୟକ୍ରମ ଭାବେ ଆରମ୍ଭ କରାଯାଇଥିଲା । ଜିଲ୍ଲା ଖଣିଜ ପ୍ରତିଷ୍ଠାନ ପକ୍ଷରୁ ଆର୍ଥିକ ସହାୟତା ସହିତ ବିଭାଗର ସହଯୋଗରେ ଏହି କାର୍ଯକ୍ରମ ଆରମ୍ଭ କରାଯାଇଥିଲା । ରାଜ୍ୟ ମାର୍କେଟିଂ ଏଜେନ୍ସି, ଆଦିବାସୀ ବିକାଶ ସମବାୟ ନିଗମ ଓଡ଼ିଶା ଲିମିଟେଡ୍ ମାଧ୍ୟମରେ ମାଣ୍ଡିଆକୁ ସର୍ବନିମ୍ନ ସହାୟତା ମୂଲ୍ୟରେ କ୍ରୟ କରାଯାଉଛି ଏବଂ ଯୋଗାଣ ବିଭାଗ ମାଧ୍ୟମରେ ବଣ୍ଟନ କରାଯାଇଛି । କାର୍ଯ୍ୟକ୍ରମର କାର୍ଯ୍ୟାନ୍ୱୟନରେ ଆଇସିଡିଏସ ଅନୁପୂରକ ପୁଷ୍ଟିକର କାର୍ଯକ୍ରମ ସହିତ ସମସ୍ତ ଗୁଣାତ୍ମକ ଦିଗ ଅନୁସରଣ କରାଯାଏ । ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଫେଡେରେସନ୍‌ଗୁଡିକ ମାଣ୍ଡିଆ ଲଡୁର ମିଶ୍ରଣ ପ୍ରସ୍ତୁତ କରି ଅଙ୍ଗନୱାଡ଼ି କେନ୍ଦ୍ରଗୁଡିକ ମଧ୍ୟରେ ମାସିକିଆ ବଣ୍ଟନ କରିଥାନ୍ତି । ଅଙ୍ଗନୱାଡ଼ି କେନ୍ଦ୍ରର ସହାୟକ ଲଡୁ ମିଶ୍ରଣରୁ ମାଣ୍ଡିଆ ଲଡୁ ପ୍ରସ୍ତୁତି କରିଥାନ୍ତି ଏବଂ ସାପ୍ତାହିକ ୪ଦିନ ପାଇଁ ପ୍ରାକ୍‌ବିଦ୍ୟାଳୟ ପିଲାମାନଙ୍କୁ ବଣ୍ଟନ କରୁଛନ୍ତି । ଏହି କାର୍ଯ୍ୟକ୍ରମ ହେଉଛି କୃଷି ଏବଂ କୃଷକ ସଶକ୍ତିକରଣ ବିଭାଗ, ମିଶନ୍ ଶକ୍ତି ବିଭାଗ, ମହିଳା ଏବଂ ଶିଶୁ ବିକାଶ ବିଭାଗ, ଓଡିଶା ରାଜ୍ୟ ଯୋଗାଣ ବିଭାଗ ଏବଂ ଜିଲ୍ଲା ଖଣିଜ ପ୍ରତିଷ୍ଠାନ, ସିଏସ୍‌ଆଇଆର୍-ସିଏଫ୍‌ଟିଆର୍‌ଆଇ, ଏନ୍‌ସିଡିଏସ୍ ଓ ୱାସନ୍‌ର ବୈଷୟିକ ସହାୟତା ସହିତ ଏକ ସୁସଙ୍ଗତ କାର୍ଯ୍ୟକ୍ରମ । ଆଇସିଡିଏସ୍ ମାଣ୍ଡିଆ ଲଡୁ କାର୍ଯ୍ୟକ୍ରମର ସଫଳ ରୂପାୟନ ସରକାରଙ୍କ ଅନ୍ୟାନ୍ୟ କଲ୍ୟାଣକାରୀ ଯୋଜନାରେ ମିଲେଟ୍ ଅନ୍ତର୍ଭୁକ୍ତିକୁ ଗୁରୁତ୍ୱ ଦେବା ପାଇଁ ପଥ ପରିଷ୍କାର କରିଛି । ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ରାଜ୍ୟରେ ନିମ୍ନଲିଖିତ ପଦକ୍ଷେପ ପାଇଁ ଉପାୟ ଖୋଲିଛି । ଆବାସିକ କେନ୍ଦ୍ରରେ ମିଲେଟ୍-ଆଧାରିତ ଖାଦ୍ୟର ବଣ୍ଟନ, ଆଇସିଡିଏସ୍‌ରେ ମିଲେଟ୍-ଆଧାରିତ ଟେକ୍-ହୋମ-ରାସନ ପ୍ରଦାନ, ସ୍ତନ୍ୟପାନ କରାଉଥିବା ମା' ଆଦି ଅନ୍ୟତମ । ଓଡ଼ିଶାର ସମସ୍ତ ଜିଲ୍ଲାରେ ଏହି କାର୍ଯ୍ୟକ୍ରମର ପ୍ରସାର କରାଯାଉଛି । ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି କଲ୍ୟାଣ ବିଭାଗର ସ୍କୁଲ ଛାତ୍ରଛାତ୍ରୀଙ୍କ ପାଇଁ ମିଲେଟ୍ ଖାଦ୍ୟକୁ ଯୋଗାଇ ଦିଆଯାଉଛି । ଜିଲ୍ଲା ଖଣିଜ ପ୍ରତିଷ୍ଠାନର ବଜେଟ୍ ସହାୟତା ସହିତ ପ୍ରଥମେ ଆଦିବାସୀ ପ୍ରାଧାନ୍ୟ କେନ୍ଦୁଝର ଜିଲ୍ଲାରେ ପ୍ରଥମ କାର୍ଯ୍ୟକ୍ରମ ଭାବେ ଆରମ୍ଭ କରାଯାଇଛି ।




(ସମନ୍ୱିତ ଶିଶୁ ବିକାଶ ଯୋଜନା ଦ୍ୱାରା ମାଣ୍ଡିଆ ଲଡୁ ବଣ୍ଟନ ଆରମ୍ଭ କାର୍ଯ୍ୟକ୍ରମ ପରିପ୍ରେକ୍ଷୀରେ କେନ୍ଦୁଝର ଜିଲ୍ଲା ଜିଲ୍ଲାପାଳ ଏବଂ ଜିଲ୍ଲା ମାଜିଷ୍ଟ୍ରେଟ୍ ଶ୍ରୀ ଆଶିଷ୍ ଠାକରେଙ୍କ ବକ୍ତବ୍ୟ ପ୍ରଦାନ)

ଏହି କାର୍ଯ୍ୟକ୍ରମ ପ୍ରଥମେ କେନ୍ଦୁଝର ଜିଲ୍ଲାର ଏକ ବ୍ଲକ୍‌ରେ ନଭେମ୍ବର ୨୦୨୨ରୁ ପାଇଲଟ୍ କାର୍ଯକ୍ରମ ଭାବେ ଆରମ୍ଭ ହୋଇଥିଲା । ବର୍ତ୍ତମାନ ଏହି କାର୍ଯ୍ୟକ୍ରମ କେନ୍ଦୁଝର ଜିଲ୍ଲାର ୩୪୦ଟି ଆବାସିକ କେନ୍ଦ୍ରର ୩୯୦୦୦ ଅନ୍ତେବାସୀଙ୍କୁ ଅନ୍ତର୍ଭୁକ୍ତ କରିଛି । ପ୍ରଚଳିତ ଖାଦ୍ୟ ତାଲିକା ସହିତ ଅତିରିକ୍ତ ପରିପୂରକ ଭାବରେ ପ୍ରତ୍ୟେକଙ୍କୁ

୨୦ ଗ୍ରାମ୍‌ର ମାଣ୍ଡିଆ ଲଡ୍ଡୁ ପ୍ରତିଦିନ ଅନ୍ତେବାସୀମାନଙ୍କୁ ଦିଆଯାଉଛି । ଏହି ପାଇଲଟ୍ କାର୍ଯ୍ୟକ୍ରମ ଅନ୍ୟ ଜିଲ୍ଲା ଖଣିଜ ପ୍ରତିଷ୍ଠାନ(ଡିଏମ୍‌ଏଫ୍) ଜିଲ୍ଲାରେ ସମାନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା ପାଇଁ ବାଟ ଖୋଲିଥିଲା ଏବଂ ଖୁବ୍ ଶୀଘ୍ର କାର୍ଯ୍ୟକାରୀ ପାଇଁ ସୁନ୍ଦରଗଡ଼ରେ ଏହି ପ୍ରସ୍ତାବ ଅନୁମୋଦନ ଲାଭ କରିଛି । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ୧୯ଟି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ ୨ଟି କୃଷକ ଉତ୍ପାଦକ ସଙ୍ଗଠନ ପ୍ରକ୍ରିୟାକରଣ ଏବଂ ମୂଲ୍ୟଯୁକ୍ତ ଉତ୍ପାଦ ପ୍ରସ୍ତୁତ କରିବାରେ ସମ୍ପୃକ୍ତ ଥିଲେ । ଏହାସହିତ ପ୍ରଦାନ କରାଯାଉଥିବା ସେବା ପାଇଁ ସହାୟତା କରିଥିଲେ, ଯାହାକି ସେମାନଙ୍କ ଜୀବିକା ନିର୍ବାହ କରିବାରେ ସହାୟକ ହୋଇଛି । ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି ଏବଂ ପଛୁଆ ବର୍ଗ ବିକାଶ ବିଭାଗ, କୃଷି ଓ କୃଷକ ସଶକ୍ତିକରଣ ବିଭାଗ ଏବଂ ମିଶନ ଶକ୍ତି ବିଭାଗ କାର୍ଯ୍ୟକ୍ରମର ଏକ ଅଂଶ ହେଲା, ଡିଏମଏଫ୍ କେନ୍ଦୁଝରଙ୍କ ଆର୍ଥିକ ସହାୟତା ଏବଂ ଓଡ଼ିଶା ମିଲେଟ୍ସ ମିଶନ ଅଧୀନରେ ପ୍ରୋଗ୍ରାମ ସେକ୍ରେଟେରିଏଟ୍‌ଙ୍କ ବୈଷୟିକ ସହାୟତାରେ ଏହି କାର୍ଯ୍ୟକ୍ରମ କରାଯାଉଛି ।

### ମିଶନ ଶକ୍ତି ସହିତ ସହଭାଗିତା

ଓଡ଼ିଶାରେ ମିଲେଟ୍ ଚାଷକୁ ପ୍ରୋତ୍ସାହିତ କରିବା ସହ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀକୁ ସଶକ୍ତ କରିବା ପାଇଁ ଓଡ଼ିଶା ମିଲେଟ୍ସ ମିଶନ ଏବଂ ମିଶନ ଶକ୍ତି ବିଭାଗ ସହଭାଗିତାରେ କାର୍ଯ୍ୟ କରୁଛନ୍ତି । ମିଶନ ଶକ୍ତି ବିଭାଗ ସାମାଜିକ ଅର୍ଥନୈତିକ ବିକାଶ ପାଇଁ ମହିଳାମାନଙ୍କର ସ୍ୱୟଂ ସହାୟକ ମହାସଂଘକୁ ସଂଗଠିତ କରିବା ପାଇଁ କାର୍ଯ୍ୟ କରିବା ସହିତ ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟାମାନଙ୍କୁ ମିଲେଟ୍ ଚାଷ କରିବାକୁ ପ୍ରୋତ୍ସାହିତ କରାଯାଉଛି । ଫଳସ୍ୱରୂପ ବହୁ ମହିଳା ପାରମ୍ପରିକ ଭାବରେ ଏହି ଚାଷ କାର୍ଯ୍ୟରେ ନିୟୋଜିତ ଅଛନ୍ତି । ପ୍ରଦର୍ଶନ ଏବଂ କର୍ମଶାଳା ମାଧ୍ୟମରେ ମିଲେଟ୍ ଚାଷର ଉନ୍ନତ ପଦ୍ଧତି ପାଇଁ ମିଲେଟ୍ ମିଶନ ଏସ୍‌ଏଚ୍‌ଜି ସଦସ୍ୟାମାନଙ୍କୁ ତାଲିମ ପ୍ରଦାନ କରୁଛି । ଏଥିରେ ବିହନ ବୁଣିବା ପ୍ରଣାଳୀ, ଅନ୍ତଃଫସଲ ଚାଷ, ଜୈବ ସାର ବ୍ୟବହାର, ଫସଲ ସୁରକ୍ଷା ଏବଂ ଯାନ୍ତ୍ରିକ ଅମଳ ଅନ୍ତର୍ଭୁକ୍ତ କରାଯାଇଛି । ମହିଳା କୃଷକମାନଙ୍କୁ ଗୁଣାତ୍ମକ ବିହନ ଯୋଗାଇବା, ମଣ୍ଡି ମାଧ୍ୟମରେ ମିଲେଟ୍ କ୍ରୟ ବ୍ୟବସ୍ଥା କରିବା ଏବଂ ମିଲେଟ୍ ଉତ୍ପାଦ ଯୋଗାଣକାରୀ ଭାବରେ ଏସ୍‌ଏଚ୍‌ଜିଗୁଡ଼ିକୁ ସରକାରୀ ପୁଷ୍ଟିକର କାର୍ଯ୍ୟକ୍ରମ ସହିତ ସଂଯୋଗ କରିବା ଭଳି କାର୍ଯ୍ୟରେ ଏସ୍‌ଏଚ୍‌ଜି ଫେଡେରେସନ୍ ନିୟୋଜିତ ଅଛନ୍ତି । ଏସ୍‌ଏଚ୍‌ଜି ମହିଳାମାନଙ୍କୁ ମିଲେଟ୍ ପ୍ରକ୍ରିୟାକରଣ ୟୁନିଟ୍ ଏବଂ ମିଲେଟ୍ ରେସ୍ତୋରାଁ ପରି ମିଲେଟ୍ ଆଧାରିତ ଉଦ୍ୟୋଗଗୁଡିକ ପରିଚାଳନା କରିବା ପାଇଁ ମଧ୍ୟ ତାଲିମ ଦିଆଯାଉଛି । ମିଲେଟ୍‌ଗୁଡିକର ସର୍ବନିମ୍ନ ସହାୟକ ମୂଲ୍ୟରୁ ମହିଳା କୃଷକମାନେ ଲାଭ ପାଇବାକୁ, ଏସ୍‌ଏଚ୍‌ଜିଗୁଡ଼ିକ ସରକାରୀ କ୍ରୟ ପୋର୍ଟାଲରେ ମହିଳା କୃଷକଙ୍କ ପଞ୍ଜିକରଣ କରନ୍ତି । ମିଲେଟ୍ କ୍ରୟ ଉପରେ ସିଧାସଳଖ ଦେୟକୁ ସୁଗମ କରିବା ପାଇଁ ବ୍ୟାଙ୍କ ଖାତା ବିବରଣୀ ମଧ୍ୟ ସଂଗ୍ରହ କରଯାଉଛି । ଏସ୍‌ଏଚ୍‌ଜି ଫେଡେରେସନ୍‌ଗୁଡ଼ିକ ଗ୍ରାମ୍ୟସ୍ତରରେ କ୍ରୟ ସଂସ୍ଥା ଭାବରେ କାର୍ଯ୍ୟ କରନ୍ତି ।

ଏସ୍‌ଏଚ୍‌ଜି ମହିଳାମାନଙ୍କ ମଧ୍ୟରେ ମିଲେଟ୍ ଚାଷ ଏବଂ ମୂଲ୍ୟଯୁକ୍ତ କାର୍ଯକ୍ରମକୁ ପ୍ରୋତ୍ସାହିତ କରାଯାଉଛି । ଏହି ସହଭାଗିତାର ଉଦ୍ଦେଶ୍ୟ ହେଉଛି ମହିଳାଙ୍କ ଆୟ ବୃଦ୍ଧି, ପୁଷ୍ଟିକର ଖାଦ୍ୟ ନିରାପତ୍ତା ସୁନିଶ୍ଚିତ କରିବା ଏବଂ ଭାରତର ପାରମ୍ପରିକ ମିଲେଟ୍ ଫସଲକୁ ପୁନର୍ଜୀବିତ କରିବା । କୃଷି ବିକାଶ ଏବଂ ମହିଳା ସଶକ୍ତିକରଣ ପାଇଁ ସରକାରୀ ବିଭାଗଗୁଡ଼ିକ କିପରି ଫଳପ୍ରଦ ଭାବରେ ସହଯୋଗ କରିପାରିବେ, ତାହା ଏହାର ଉଦାହରଣ ଅଟେ । ସମଗ୍ର ଭାରତରେ ମିଲେଟ୍ ଚାଷରେ ନିୟୋଜିତ ଲକ୍ଷ ଲକ୍ଷ ମହିଳା କୃଷକଙ୍କୁ ଉପକୃତ କରିବା ପାଇଁ ଏହି ମଡେଲର ବିକାଶ କରାଯାଇପାରିବ । ଏହା ବ୍ୟତୀତ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟମାନଙ୍କ ମଧ୍ୟରେ ମିଲେଟ୍ ଆଧାରିତ ଖାଦ୍ୟ ଉଦ୍ୟୋଗକୁ ପ୍ରୋତ୍ସାହିତ କରିବା ପାଇଁ 'ମିଲେଟ୍ ଶକ୍ତି' ବ୍ରାଣ୍ଡ୍ ସୃଷ୍ଟି କରିଛି ।



(ଓଡ଼ିଶା ମିଲେଟ୍ସ ମିଶନ ଏବଂ ମିଶନ ଶକ୍ତି ବିଭାଗର ମିଳିତ ସହଯୋଗରେ ସୁନ୍ଦରଗଡ଼ ଜିଲ୍ଲା ବିଶ୍ରା ବ୍ଲକର ଦିବ୍ୟଜ୍ୟୋତି ସ୍ୱୟଂ ସହାୟକ ଗୋଷ୍ଠୀଙ୍କ ଦ୍ୱାରା ଏକ ଟିଫିନ୍ ସେଣ୍ଟର ପରିଚାଳିତ)

### ପ୍ରୋତ୍ସାହିତ ଉଦ୍ୟୋଗ

ବିଭିନ୍ନ ପ୍ରକାରର ଉଦ୍ୟୋଗକୁ ପ୍ରୋତ୍ସାହନ ଦିଆଯାଇଛି ଏବଂ ଅଳ୍ପ କେତେକ ଓଡ଼ିଶା ମିଲେଟ୍ସ ମିଶନ ଅଧୀନରେ ପାଇପ୍ ଲାଇନରେ ଅଛନ୍ତି । ଏଥିମଧ୍ୟରେ ଜୈବ ସାମଗ୍ରୀ କେନ୍ଦ୍ର, କଷ୍ଟମ୍ ହାୟରିଂ ସେଣ୍ଟର, ଗୋଷ୍ଠୀ ଦ୍ୱାରା ପରିଚାଳିତ ବିହନ କେନ୍ଦ୍ର, ମିଲେଟ୍ ଟିଫିନ୍ ସେଣ୍ଟର, ମିଲେଟ୍-ଅନ୍-ହୁଇଲ, ମିଲେଟ୍ ଆଉଟ୍‌ଲେଟ୍, ପଲଭରାଇଜିଂ ୟୁନିଟ୍, ଡିହଲିଙ୍ଗ୍ ୟୁନିଟ୍, ଥ୍ରେସିଂ ୟୁନିଟ୍, କ୍ଲିନିଙ୍ଗ- ଡିଷ୍ଟୋନିଙ୍ଗ-ଗ୍ରେଡିଂ ଅନ୍ତର୍ଭୁକ୍ତ । ଏହି ଉଦ୍ୟୋଗଗୁଡ଼ିକ ଏସ୍‌ଏଚ୍‌ଜି ଏବଂ ଏଫ୍‌ପିଓଙ୍କ ପାଇଁ ବ୍ୟବସାୟିକ କାର୍ଯ୍ୟକ୍ରମରେ ନିୟୋଜିତ କରିବ ଏବଂ ଅଭିବୃଦ୍ଧି ପାଇଁ ନୂତନ ସୁଯୋଗ ପ୍ରଦାନ କରିବ ।




(ଓଡ଼ିଶା ମିଲେଟ୍ସ ମିଶନର ସହାୟତାରେ ସୁନ୍ଦରଗଡ଼ ଜିଲ୍ଲା ଟାଙ୍ଗରପାଲି ବ୍ଲକର ବୁଡାବାହାଲ ଗ୍ରାମରେ ମା' ସାରଦା ସ୍ୱୟଂ ସହାୟକ ଗୋଷ୍ଠୀଙ୍କ ଦ୍ୱାରା ଜୈବିକ ଖତ ପ୍ରସ୍ତୁତ କରାଯାଉଛି)

### ଜୈବ ସାମଗ୍ରୀ କେନ୍ଦ୍ର

ଜୈବ ସାମଗ୍ରୀ ବ୍ୟବହାରକୁ ବ୍ଲକ୍ ଏବଂ ଗ୍ରାମପଞ୍ଚାୟତ ସ୍ତରରେ ଉତ୍ସାହିତ କରିବା ପାଇଁ ଜୈବ ସାମଗ୍ରୀ କେନ୍ଦ୍ରଗୁଡ଼ିକୁ ପ୍ରୋତ୍ସାହିତ କରାଯାଉଛି । ମିଲେଟ୍ ଚାଷରେ ରାସାୟନିକ ସାର ଏବଂ କୀଟନାଶକ ବ୍ୟବହାର ହ୍ରାସ କରିବା ଜୈବ ସାମଗ୍ରୀ ପ୍ରସ୍ତୁତିର ଅନ୍ୟତମ ଲକ୍ଷ୍ୟ । ଅନ୍ୟ ଏକ ଲକ୍ଷ୍ୟ ହେଉଛି ଜୈବ ସାମଗ୍ରୀ ପ୍ରସ୍ତୁତି ପାଇଁ ସ୍ଥାନୀୟ ଭାବରେ ଉପଲବ୍ଧ କଞ୍ଚାମାଲର ବ୍ୟବହାରକୁ ଉତ୍ସାହିତ କରି କୃଷି ସାମଗ୍ରୀ ଖର୍ଚ୍ଚକୁ ଅପେକ୍ଷାକୃତ ହ୍ରାସ କରିବା । ଯଦିଓ କୃଷକମାନଙ୍କ ପାଇଁ କମ୍ପୋଷ୍ଟ ଖତ ଏବଂ ଜୈବ ସାମଗ୍ରୀ ମାଧ୍ୟମରେ ବିହନ ବିଶୋଧନ ପାଇଁ ପ୍ରୋତ୍ସାହନମୂଳକ ସହାୟତା ଅଛି, ଏହା ବ୍ୟବସାୟ ଭାବରେ ଜୈବ ସାମଗ୍ରୀ ବ୍ୟବହାର କରିବା ପାଇଁ କୃଷକ ଉତ୍ପାଦକ ସଙ୍ଗଠନ ଏବଂ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ସଦସ୍ୟମାନଙ୍କ ପାଇଁ ଏକ ପ୍ରେରଣାଦାୟକ ଉପାଦାନ ହୋଇପାରିଛି । ଏହାକୁ ସେମାନଙ୍କର ରୋଜଗାରର ଉତ୍ସ ଏବଂ କୃଷି କ୍ଷେତ୍ରରେ ଉତ୍ପାଦନ ଖର୍ଚ୍ଚ ହ୍ରାସ କରିବା ପାଇଁ ବ୍ୟବହାର କରାଯାଇପାରିବ । କୃଷକ ଉତ୍ପାଦକ ସଂଗଠନ ଏବଂ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ୩୦ଟି ଜିଲ୍ଲାରେ ଏହି କେନ୍ଦ୍ର ଗଠନ କରାଯାଇଛି । ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଉତ୍ପାଦନ ଦାୟିତ୍ୱରେ ଥିବାବେଳେ କୃଷକ ଉତ୍ପାଦକ ମହାସଂଘଗୁଡ଼ିକ ସ୍ଥାନୀୟ ବଜାରରେ ଜୈବ ସାମଗ୍ରୀ ମାର୍କେଟିଂ ଦାୟିତ୍ୱରେ ଅଛନ୍ତି । ଜୀବାମୃତ, ଘନ ଜୀବାମୃତ, ହାଣ୍ଡି ଖତ, ନିମାସ୍ତ୍ର, ଅଗ୍ନାସ୍ତ୍ର ଓ ବିଜାମୃତର ହେଉଛି ୬ଟି ପ୍ରମୁଖ ଉତ୍ପାଦ, ଯେଉଁଥିରେ ଏହି କେନ୍ଦ୍ରଗୁଡ଼ିକ ଉତ୍ପାଦନ ଏବଂ ବିକ୍ରିବଟା କ୍ଷେତ୍ରରେ ସେମାନଙ୍କର ପ୍ରୟାସକୁ ଜାରି ରଖିଛନ୍ତି । ଏହା ବ୍ୟତୀତ ସେମାନେ ମାଛ ଟନିକ୍, ଅଣ୍ଡା ଟନିକ୍, ଦଶପର୍ଣ୍ଣି ଅର୍କ ଏବଂ ଜିଆ ଖତ ଇତ୍ୟାଦି ଉତ୍ପାଦନ ଏବଂ ବିକ୍ରିବଟା ମଧ୍ୟ କରିଥାନ୍ତି ।

### କୃଷି ଯନ୍ତ୍ରପାତି ଭଡ଼ା କେନ୍ଦ୍ର

କୃଷି ଯନ୍ତ୍ରପାତି ଭଡ଼ା କେନ୍ଦ୍ର ଗ୍ରାମ୍ୟସ୍ତରରେ ସେବା କେନ୍ଦ୍ର ଭାବରେ କାର୍ଯ୍ୟ କରିଥାଏ, ଯାହା କୃଷି ପାଇଁ

ସହାୟତା ପ୍ରଦାନ କରିଥାଏ । ବିଭିନ୍ନ ଆବଶ୍ୟକୀୟ କୃଷି ଉପକରଣ ଯେପରିକି ପମ୍ପ୍ ସେଟ୍ କିମ୍ବା ସିଞ୍ଚନ ଯନ୍ତ୍ର ଏହି କେନ୍ଦ୍ରଗୁଡ଼ିକରେ ରଖାଯାଇଛି । ଅନ୍ୟ ବିକଳ୍ପ ତୁଳନାରେ କୃଷକମାନେ ଏହି ଉପକରଣଗୁଡ଼ିକୁ ଉପଯୁକ୍ତ ମୂଲ୍ୟରେ ଭଡ଼ାରେ ନେବା ପାଇଁ ସୁଯୋଗ ପାଉଛନ୍ତି । ଏହି କେନ୍ଦ୍ରଗୁଡ଼ିକ ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟ କିମ୍ବା କୃଷକ ଉତ୍ପାଦକ ସଙ୍ଗଠନର ସଦସ୍ୟମାନଙ୍କ ଦ୍ୱାରା ପରିଚାଳିତ ହେଉଛି ।

### ଗୋଷ୍ଠୀ ପରିଚାଳିତ ବିହନ କେନ୍ଦ୍ର

ଏସ୍ଏଚ୍‌ଜି କିମ୍ବା ଏଫ୍‌ପିଓ ଦ୍ୱାରା ସଙ୍ଗଠିତ ଓ ଗୋଷ୍ଠୀ ପରିଚାଳିତ ବିହନ କେନ୍ଦ୍ର ଅନୁମୋଦିତ ଚାଷ ପଦ୍ଧତି ମାଧ୍ୟମରେ ବିହନ ସଂଗ୍ରହ ଏବଂ ସଂରକ୍ଷଣ କରିଥାଏ । ବିହନ କେନ୍ଦ୍ରଗୁଡ଼ିକ ବିହନର ଏକ ଅଂଶ ସଂରକ୍ଷଣ କରନ୍ତି ଏବଂ ଅବଶିଷ୍ଟ ଚାଷ କରିଥାନ୍ତି । କୃଷକମାନଙ୍କୁ ବିକ୍ରୟ ପରେ ନୂତନ ବିହନ ସଂରକ୍ଷଣ କରନ୍ତି । ସେମାନେ ବିହନ ସଂରକ୍ଷଣ ପାଇଁ ବର୍ଣ୍ଣିତ ଚାଷ ପଦ୍ଧତିକୁ ଅନୁସରଣ କରନ୍ତି । ଏହି କାର୍ଯ୍ୟ ପ୍ରତିବର୍ଷ ଜାରି ରହିଥାଏ । ଫଳସ୍ୱରୂପ ବିହନ ସଂରକ୍ଷଣ ସ୍ଥାୟୀ ଭାବରେ ହୋଇଥାଏ । ବିହନ କେନ୍ଦ୍ରଗୁଡ଼ିକ ଉପଲବ୍ଧ ସ୍ଥାନୀୟ ବିହନ ଚିହ୍ନଟ କରି, ଉତ୍ସ ଓ ତାହାର ବିବରଣୀ ସଂଗ୍ରହ ଏବଂ ବିଶ୍ଳେଷଣ କରେ । ତା'ପରେ ସର୍ବୋତ୍ତମ ୧୦ କିସମର ବିହନ ଚାଷ କରନ୍ତି । ଅମଳ ପରେ ଗୋଟିଏ କିମ୍ବା ଦୁଇଟି ସର୍ବାଧିକ ଅମଳ ବିହନ ଚୟନ କରାଯାଏ । ସ୍ଥାନୀୟ ଚାଷ ପାଇଁ ସର୍ବୋତ୍ତମ ବିହନ ପାଇବା ପାଇଁ କେନ୍ଦ୍ରଗୁଡ଼ିକ ପାଇଁ ଏହି ପ୍ରକ୍ରିୟା ତିନି ବର୍ଷ ସମୟ ନେଇଥାଏ । ପ୍ରଥମ ବର୍ଷରେ ଅଂଶଗ୍ରହଣକାରୀ କିସମଗତ ପରୀକ୍ଷଣ କରିଥାନ୍ତି ଏବଂ ଦ୍ୱିତୀୟ ବର୍ଷରେ ସର୍ବଶ୍ରେଷ୍ଠ ପ୍ରଦର୍ଶନକାରୀ ବିହନ ଚୟନ କରାଯାଏ । ତୃତୀୟ ବର୍ଷରେ ବିହନକୁ ବହୁଗୁଣିତ କରାଯାଏ । ବିହନ ପରିମାଣକୁ ବହୁଗୁଣିତ କରିବା ପାଇଁ କେନ୍ଦ୍ରଗୁଡ଼ିକ ସର୍ବୋତ୍ତମ ପ୍ରଦର୍ଶନକାରୀ ବିହନ ଚାଷ କରିବା ପାଇଁ ୧୦–୨୦ କୃଷକଙ୍କୁ ଚୟନ କରନ୍ତି । ଏହି କୃଷକମାନେ ବିହନ ଚାଷ ପଦ୍ଧତି ସମ୍ବନ୍ଧରେ ତାଲିମ ଗ୍ରହଣ କରନ୍ତି । ଅମଳ ପରେ ବିହନ କେନ୍ଦ୍ରଗୁଡିକ ଏହି ମନୋନୀତ କୃଷକମାନଙ୍କଠାରୁ ବିହନ କ୍ରୟ କରନ୍ତି ଏବଂ ପରେ ଅନ୍ୟ କୃଷକମାନଙ୍କୁ ଯୋଗାନ୍ତି । ବିହନ କେନ୍ଦ୍ରଗୁଡ଼ିକ ବ୍ୟବସାୟିକ ସଂସ୍ଥା ଭାବରେ କାର୍ଯ୍ୟ କରେ । ପ୍ରଥମ ଦୁଇ ବର୍ଷରେ ଗବେଷଣା କରାଯାଏ ଏବଂ ବହୁଗଣିତ କାର୍ଯ୍ୟ ତୃତୀୟ ବର୍ଷରେ ଆରମ୍ଭ ହୁଏ । ସେମାନଙ୍କର ବ୍ୟବସାୟ ଆରମ୍ଭ କରିବାରେ ସରକାର ଏହି କେନ୍ଦ୍ରଗୁଡ଼ିକୁ ଆବଶ୍ୟକ ସହାୟତା ପ୍ରଦାନ କରନ୍ତି ।




(ନୂଆପଡ଼ା ଜିଲ୍ଲା ସିଲେଟ୍‌ପାଣିର ସରସ୍ୱତୀ ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ପରିଚାଳିତ ଗୋଷ୍ଠୀ ଆଧାରିତ ପୁଷ୍ଟିଶସ୍ୟ ବିହନ କେନ୍ଦ୍ରରୁ ଜଣେ ଚାଷୀ ମାଣ୍ଡିଆ ବିହନ କିଣୁଛନ୍ତି)

### ମିଲେଟ୍ ଥ୍ରେସର ୟୁନିଟ୍

ଓଡ଼ିଶା ମିଲେଟ୍ସ ମିଶନ ସମଗ୍ର ରାଜ୍ୟରେ ମିଲେଟ୍ ଥ୍ରେସର ୟୁନିଟ୍ ପ୍ରତିଷ୍ଠାକୁ ସଫଳତାର ସହ ପ୍ରୋତ୍ସାହିତ କରିଛି । ମିଲେଟ୍ ଚାଷରେ ଅମଳ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ଏହି ପଦକ୍ଷେପ ସାରା ରାଜ୍ୟରେ ଅନେକ ଚାଷୀଙ୍କ ପାଇଁ ଜୀବିକା ନିର୍ବାହରେ ସୁଯୋଗ ସୃଷ୍ଟି କରିଛି । ଏହି ପଦକ୍ଷେପ ମଧ୍ୟ ରାଜ୍ୟରେ ମିଲେଟ୍ ଉତ୍ପାଦନ ବୃଦ୍ଧି କରିବାରେ ସହାୟକ ହୋଇଛି ଏବଂ ଦେଶରେ ମିଲେଟ୍ ଉତ୍ପାଦନରେ ଆଗୁଆ ହୋଇପାରିଛି ।

### ମିଲେଟ୍ କ୍ଲିନିଙ୍ଗ– ଗ୍ରେଡିଂ– ଡିଷ୍ଟୋନିଂ ୟୁନିଟ୍

ଓଡ଼ିଶାରେ ଅନେକ ମିଲେଟ୍ କ୍ଲିନିଙ୍ଗ – ଗ୍ରେଡିଂ ଓ ଡିଷ୍ଟୋନିଂ ୟୁନିଟ୍ ପ୍ରତିଷ୍ଠା କରାଯାଇଛି, ଯାହାଦ୍ୱାରା ଶହ ଶହ ଚାଷୀ ଉପକୃତ ହେଉଛନ୍ତି । ଏହାଦ୍ୱାରା ସେମାନେ

ଏକ ବିକଳ୍ପ ଆୟର ଉତ୍ସ ପାଇପାରିଛନ୍ତି । ଏହି ୟୁନିଟ୍‌ଗୁଡ଼ିକ ମିଲେଟ୍‌ର ଗୁଣରେ ଉନ୍ନତି ଆଣିବାରେ ସାହାଯ୍ୟ କରି ସେମାନଙ୍କୁ ଅଧିକ ବଜାର ଦର ଦେଇଥାଏ । ଏହା ମଧ୍ୟ ହାତରେ ସଫା କରିବା କଷ୍ଟ ଲାଘବ କରିଥାଏ । ଏଥିସହ ୟୁନିଟ୍‌ଗୁଡ଼ିକ ସ୍ଥାନୀୟ ଲୋକଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି କରି ସେମାନଙ୍କ ଅର୍ଥନୀତିକୁ ବୃଦ୍ଧି କରିବାରେ ସାହାଯ୍ୟ କରିଥାନ୍ତି ।

### ମିଲେଟ୍ ଡିହଲର୍ ୟୁନିଟ୍

ମିଲେଟ୍ ଡିହଲର ୟୁନିଟ୍ ହେଉଛି ଅନ୍ୟ ଏକ ଜୀବିକା କାର୍ଯ୍ୟ, ଯାହାକି ବିଭିନ୍ନ ଜିଲ୍ଲାରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟମାନଙ୍କ ପାଇଁ ଓଡ଼ିଶା ମିଲେଟ୍ସ ମିଶନ୍ ଦ୍ୱାରା ପ୍ରୋତ୍ସାହିତ । ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟମାନଙ୍କୁ ଜୀବିକା ନିର୍ବାହ ତଥା ସେମାନଙ୍କର ଆର୍ଥିକ ଉନ୍ନତି ପାଇଁ ଏହି ୟୁନିଟ୍‌ଗୁଡ଼ିକ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ମିଲେଟ୍ ଡିହଲିଙ୍ଗ ଦ୍ୱାରା ମିଲେଟ୍ ଶସ୍ୟରୁ ଚୋପାକୁ ବାହାର କରାଯାଏ । ଏହାଦ୍ୱାରା ରାନ୍ଧିବା, ହଜମ କରିବା ସହଜ ହୁଏ ଏବଂ ପୁଷ୍ଟିଶସ୍ୟର ସାଇତା ଅବଧି ବଢ଼ିଯାଏ । ଦକ୍ଷ ମେସିନ୍ ସହିତ ସଜ୍ଜିତ, ମିଲେଟ୍ ଡିହଲର ୟୁନିଟ୍‌ଗୁଡ଼ିକ ଶୀଘ୍ର ମିଲେଟ୍ ଶସ୍ୟରୁ ଚୋପା ବାହାର କରିଥାଏ । ଏହି ୟୁନିଟ୍‌ଗୁଡ଼ିକରେ କାର୍ଯ୍ୟ କରୁଥିବା ମହିଳାମାନେ ମେସିନ୍ ଅପରେସନ୍ ଏବଂ ଚୋପା ଛଡା ଶସ୍ୟର ଗୁଣାତ୍ମକ ନିୟନ୍ତ୍ରଣ କରିବା ପାଇଁ ତାଲିମପ୍ରାପ୍ତ । ଆତ୍ମନିଯୁକ୍ତିର ଏକ ମାଧ୍ୟମ ଯୋଗାଇ ଏହି ୟୁନିଟ୍‌ଗୁଡ଼ିକ ମହିଳାମାନଙ୍କୁ ସଶକ୍ତ କରୁଛି ଏବଂ ସେମାନଙ୍କର ଆର୍ଥିକ ସ୍ଥିତିକୁ ସକାରାତ୍ମକ ଭାବରେ ପ୍ରଭାବିତ କରୁଛନ୍ତି ।

### ମିଲେଟ ପଲ୍‌ଭରାଇଜର୍ ୟୁନିଟ୍

ରୋଜଗାରର ଏକ ମାଧ୍ୟମ ଭାବରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟମାନଙ୍କୁ ରାଜ୍ୟରେ ସେମାନଙ୍କ ଜୀବିକା ନିର୍ବାହ ପାଇଁ ମିଲେଟ୍ ପଲ୍‌ଭରାଇଜର୍(ମାଣ୍ଡିଆରୁ ଚୂନା କରିବା ଯନ୍ତ୍ର) ଯୋଗାଇ ଦିଆଯାଇଛି । ଏହି ୟୁନିଟ୍‌ଗୁଡ଼ିକ ପାରସ୍ପରିକ ଲାଭଦାୟକ ବ୍ୟବସ୍ଥା ସୃଷ୍ଟି କରି ନାମମାତ୍ର ଦେୟ ପାଇଁ କୃଷକମାନଙ୍କୁ ସେମାନଙ୍କର ସେବା ପ୍ରଦାନ କରନ୍ତି । ଏହି ପଦକ୍ଷେପ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ମଧ୍ୟରେ ଥିବା ବ୍ୟକ୍ତିବିଶେଷଙ୍କୁ ଆୟ କରିବା ଏବଂ ସେମାନଙ୍କୁ କୃଷି କାର୍ଯ୍ୟରେ ସାହାଯ୍ୟ କରିଥାଏ ।

### ମିଲେଟ୍ ଟିଫିନ୍ କେନ୍ଦ୍ର

ଓଡ଼ିଶା ମିଲେଟ୍ସ ମିଶନ ସହଯୋଗରେ ଗ୍ରାମାଞ୍ଚଳରେ ସ୍ୱୟଂ ସହାୟକ ଗୋଷ୍ଠ ଦ୍ୱାରା ଟିଫିନ୍ କେନ୍ଦ୍ରଗୁଡ଼ିକ ପରିଚାଳିତ ହୋଇଥାଏ । ସେମାନଙ୍କର ମୂଳ ଲକ୍ଷ୍ୟ ହେଉଛି ଗ୍ରାମୀଣ ଜନସଂଖ୍ୟାକୁ ଏଥିରେ ଅନ୍ତର୍ଭୁକ୍ତ କରିବା । ଏହି କେନ୍ଦ୍ରଗୁଡ଼ିକ ସୁଲଭ ତଥା ଲୋକପ୍ରିୟ ସ୍ଥାନୀୟ ଜଳଖିଆ ଯେପରିକି ବରା, ସିଙ୍ଗଡ଼ା, ପକୋଡ଼ା, ଆଳୁଚପ୍, ନିମ୍‌କି, ମିକ୍ସଚର ଏବଂ ଅନ୍ୟାନ୍ୟ ଖାଦ୍ୟସାମଗ୍ରୀ ପ୍ରସ୍ତୁତ କରିଥାନ୍ତି ।

### ମିଲେଟ୍ସ-ଅନ୍-ହୁଇଲ

''ମିଲେଟ୍ସ-ଅନ୍-ହୁଇଲ'' ଏକ ଭ୍ରାମ୍ୟମାଣ ଖାଦ୍ୟ ଷ୍ଟଲ୍ ପରି, ଯାହା ଗ୍ରାମାଞ୍ଚଳ ଏବଂ କିଛି ସହରାଞ୍ଚଳରେ ବ୍ୟବହୃତ ହୁଏ । ପ୍ରତିଦିନ ଏହି ସ୍ୱତନ୍ତ୍ର ଯାନଗୁଡ଼ିକ ନିର୍ଦ୍ଦିଷ୍ଟ ମାର୍ଗ ଅନୁସରଣ କରନ୍ତି ଏବଂ ନିର୍ଦ୍ଦିଷ୍ଟ ସ୍ଥାନରେ ଅଟକି ଯାଆନ୍ତି, ଯେଉଁଠାରେ ସେମାନେ ଭଲ ବ୍ୟବସାୟ କରିପାରିବେ । ଏହି ଖାଦ୍ୟଯାନ ଚଳାଇବା ପାଇଁ ଓଡ଼ିଶା ମିଲେଟ୍ସ ମିଶନ୍ ମନୋନୀତ ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକୁ ବ୍ୟବସାୟ ଆରମ୍ଭ କରିବାରେ ସାହାଯ୍ୟ କରନ୍ତି । ଏହି ଭ୍ରାମ୍ୟମାଣ ଷ୍ଟଲ୍‌ରୁ ବିକ୍ରି ହେଉଥିବା ଖାଦ୍ୟରେ ବରା, ସିଙ୍ଗଡ଼ା, ଇଡ୍‌ଲି, ପୁରି ଏବଂ ଲୋକପ୍ରିୟ ଜଳଖିଆ ଅନ୍ତର୍ଭୁକ୍ତ । ଏହି ସ୍ୱତନ୍ତ୍ର ଖାଦ୍ୟ ଷ୍ଟଲ୍‌ଗୁଡ଼ିକ କେବଳ ସ୍ଥାନୀୟ ଭାବରେ ଅଧିକ ଖାଦ୍ୟ ବିକଳ୍ପ ପ୍ରଦାନ କରେ ନାହିଁ ବରଂ ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ ସେମାନଙ୍କର ବ୍ୟବସାୟ ଆରମ୍ଭ କରିବାରେ ସାହାଯ୍ୟ କରିଥାଏ । ମିଲେଟ୍ସ-ଅନ୍-ହୁଇଲ୍ ଧାରଣା ଦିଏ ଯେ ମିଲେଟ୍ ମିଶନ କିପରି ରନ୍ଧନ ପାଇଁ ମିଲେଟ୍ ବ୍ୟବହାର କରିବାର ନୂତନ ଏବଂ ସୃଜନଶୀଳ ଉପାୟକୁ ଉତ୍ସାହିତ କରିବାକୁ ଚାହୁଁଛି ଏବଂ ସ୍ଥାନୀୟ ଅର୍ଥନୀତିକୁ ବୃଦ୍ଧି କରିବାରେ ସାହାଯ୍ୟ କରୁଛି ।




(ଓଡ଼ିଶା ମିଲେଟ୍ସ ମିଶନ ଏବଂ ମିଶନ ଶକ୍ତି ବିଭାଗର ସହଯୋଗିତାରେ ସୁନ୍ଦରଗଡ଼ ଜିଲ୍ଲା ରାଜଗାଙ୍ଗପୁରର ସ୍ୱସ୍ତିକ୍ ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ଏକ ମିଲେଟ୍ସ-ଅନ୍-ହୁଇଲ୍ ପରିଚାଳିତ)

### ମିଲେଟ୍ ଆଉଟ୍‌ଲେଟ୍

ସହରାଞ୍ଚଳରେ ଓଡ଼ିଶା ମିଲେଟ୍ସ ମିଶନ୍ କାର୍ଯ୍ୟକ୍ରମର ସହଯୋଗରେ ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟମାନେ ମିଲେଟ୍ ଆଉଟ୍‌ଲେଟ୍ ଚଳାଉଛନ୍ତି । ଏହି ଆଉଟ୍‌ଲେଟ୍‌ଗୁଡ଼ିକ ବିଭିନ୍ନ ପ୍ରକାରର ପିଠା, ବିସ୍କୁଟ ଏବଂ ଜଳଖିଆ ବିକ୍ରୟ କରନ୍ତି । ଏହି ମିଲେଟ୍ ଆଉଟ୍‌ଲେଟ୍‌ଗୁଡ଼ିକରେ ଟେକ୍-ହୋମ୍ ରାସନ ମଧ୍ୟ ଯୋଗାଇ ଦିଆଯାଉଛି ।



(ଭୁବନେଶ୍ୱରସ୍ଥିତ ଲୋକସେବା ଭବନ ପରିସରରେ ମା' ମଙ୍ଗଳା ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟଙ୍କ ଦ୍ୱାରା ମିଲେଟ୍ ଶକ୍ତି କାଫେ ପରିଚାଳିତ)

### ମିଲେଟ୍ କାଫେ

ଓଡ଼ିଶା ମିଲେଟ୍ସ ମିଶନ ଅଧୀନରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ରାଜ୍ୟର ସହରାଞ୍ଚଳରେ ମିଲେଟ୍ କାଫେ ପ୍ରତିଷ୍ଠା କରାଯାଇଛି । ଏହି କାଫେଗୁଡ଼ିକ ଭୁବନେଶ୍ୱରର ଲୋକସେବା ଭବନ, ପୁରୀ, କଟକର ବାରବାଟୀ ଷ୍ଟାଡିୟମ୍ ଏବଂ ବଲାଙ୍ଗୀର ଭଳି ବିଭିନ୍ନ ସ୍ଥାନରେ ଅବସ୍ଥିତ । ଏହି କାଫେଗୁଡ଼ିକରେ ବିସ୍କୁଟ, ପିଠା, ସୁପ୍ ଏବଂ ନୂତନ ଭାବରେ ପ୍ରସ୍ତୁତ ଜଳଖିଆ ସହିତ ମିଲେଟ୍-ଆଧାରିତ ଜଳଖିଆ ଏବଂ ଭୋଜନ ଉପଲବ୍ଧ । ଏହି କାଫେଗୁଡ଼ିକ ରାଜଧାନୀ ଭୁବନେଶ୍ୱର ତଥା ଜିଲ୍ଲା ମୁଖ୍ୟାଳୟରେ ଦେଖିବାକୁ ମିଳେ । ଏହି ମିଲେଟ୍ କାଫେଗୁଡ଼ିକର ମୂଳ ଉଦ୍ଦେଶ୍ୟ ହେଉଛି ମିଲେଟ୍‌ର ବ୍ୟବହାରକୁ ଉତ୍ସାହିତ କରିବା, ଯାହା ଉଭୟ ପୁଷ୍ଟିକର ଏବଂ ମିତବ୍ୟୟୀ ଖାଦ୍ୟର ଉତ୍ସ ଅଟେ । ଏହା ବ୍ୟତୀତ ଏହି କାଫେଗୁଡ଼ିକ ମହିଳାମାନଙ୍କୁ ଆର୍ଥିକ ଦୃଷ୍ଟିରୁ ସଶକ୍ତ କରୁଛନ୍ତି ।

ଏହା ବ୍ୟତୀତ ଏକ ମିଲେଟ୍ ସେବା କେନ୍ଦ୍ର ଏବଂ ଏକ ମିନି ମିଲେଟ୍ କାରଖାନା ପ୍ରତିଷ୍ଠା ହେବା ପାଇଁ କାର୍ଯ୍ୟ ଚାଲୁ ରହିଛି ।

### ମିଲେଟ୍ ସେବା କେନ୍ଦ୍ର

କୃଷକ ଉତ୍ପାଦକ ସଂଗଠନ ଏବଂ ସ୍ୱୟଂ ସହାୟକ ଗୋଷ୍ଠୀକୁ ସହାୟତା ଯୋଗାଇବା ପାଇଁ ସରକାର ଏକ ମିଲେଟ୍ ସେବା କେନ୍ଦ୍ର ଯୋଜନା କରୁଛନ୍ତି । ଏହି ପଦକ୍ଷେପଟି ବିସ୍ତୃତ ଏବଂ ସମ୍ପୂର୍ଣ୍ଣ କାର୍ଯ୍ୟକ୍ଷମ ସେଟ୍‌ଅପ୍ ବିକାଶ ପାଇଁ ଏଫ୍‌ପିଓ ଏବଂ ଏସ୍‌ଏଚ୍‌ଜିରେ ପୁଞ୍ଜି ବିନିଯୋଗକୁ ସୁଗମ କରିବାକୁ ଲକ୍ଷ୍ୟ ରଖିଛି । ଏଫ୍‌ପିଓ ଏବଂ ଏସ୍‌ଏଚ୍‌ଜି ପାଇଁ ଏହା ଏକ ଉତ୍ତମ ସୁଯୋଗ ହେବ, ଯାହା ସେମାନଙ୍କୁ ନୂତନ ବ୍ୟବସାୟ ଆରମ୍ଭ କରିବାକୁ ସକ୍ଷମ କରିବ । ମିଲେଟ୍ ସର୍ଭିସ ସେଣ୍ଟର ପ୍ରତିଷ୍ଠା ଦ୍ୱାରା ରାଜ୍ୟରେ ଔଦ୍ୟୋଗିକ ଏବଂ ଅର୍ଥନୈତିକ ଅଭିବୃଦ୍ଧି ଘଟିବ ।

### ମିନି ମିଲେଟ୍ କାରଖାନା

ଭୁବନେଶ୍ୱରରେ ଏକ ମିନି ମିଲେଟ୍ କାରଖାନା ପ୍ରତିଷ୍ଠା ପ୍ରକ୍ରିୟା ଚାଲିଛି । ଉତ୍ପାଦନର ସମସ୍ତ ପର୍ଯ୍ୟାୟକୁ ଅନ୍ତର୍ଭୁକ୍ତ କରି କାରଖାନା ଏକ ବିସ୍ତୃତ ସେଟ୍‌ଅପ୍ ଭାବରେ କଳ୍ପନା କରାଯାଇଛି ଏବଂ ଏହା ଏକ କୃଷକ ଉତ୍ପାଦକ ସଂଗଠନ କିମ୍ବା ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ପରିଚାଳିତ ହେବ । ଏହି ପଦକ୍ଷେପରେ ପ୍ରାରମ୍ଭିକ ପର୍ଯ୍ୟାୟଠାରୁ ଅନ୍ତିମ ଉତ୍ପାଦ ପର୍ଯ୍ୟନ୍ତ ସମଗ୍ର ମିଲେଟ୍ ପ୍ରକ୍ରିୟାକରଣକୁ ସୁଦୃଢ଼ କରିବା ପାଇଁ ଲକ୍ଷ୍ୟ ରଖାଯାଇଛି ।

### ମିଲେଟ୍ ବ୍ୟବହାରକୁ ପ୍ରୋତ୍ସାହିତ କରିବା

ମିଲେଟ୍‌କୁ ପୁନଃ ଲୋକପ୍ରିୟ କରିବା ଏବଂ ଏହାର ବ୍ୟବହାର ବୃଦ୍ଧି ପାଇଁ ସରକାର ବିଭିନ୍ନ ପଦକ୍ଷେପ ଆରମ୍ଭ କରିଛନ୍ତି । ଏହି ପ୍ରୟାସରେ ସଚେତନତା ଅଭିଯାନ, ପ୍ରୋତ୍ସାହନମୂଳକ କାର୍ଯ୍ୟକ୍ରମ, ଖାଦ୍ୟ ମେଳା, ସେମିନାର ଏବଂ ସୋସିଆଲ ମିଡ଼ିଆ ପ୍ରସାରଣ ଅନ୍ତର୍ଭୁକ୍ତ । ଦେଶବ୍ୟାପୀ ମିଲେଟ୍ ବ୍ୟବହାରକୁ ଉତ୍ସାହିତ କରିବା ପାଇଁ ସରକାର ବ୍ଲକ୍, ଜିଲ୍ଲା ତଥା ରାଜ୍ୟସ୍ତରରେ ମିଲେଟ୍ ପ୍ରୋତ୍ସାହନ କାର୍ଯ୍ୟକ୍ରମର ଆୟୋଜନ କରିଛନ୍ତି । ଏହି ପୁଷ୍ଟିକର ଶସ୍ୟର ଉପକାରିତା ବିଷୟରେ ଜନସାଧାରଣଙ୍କୁ ସଚେତନ କରାଇବା ଦିଗରେ ଏହି ପଦକ୍ଷେପଗୁଡ଼ିକ ଚାଷ ଏବଂ ବ୍ୟବହାର ଲକ୍ଷ୍ୟ ରଖିଛି । ସୁସ୍ୱାଦୁ ମିଲେଟ୍ ଖାଦ୍ୟଦ୍ରବ୍ୟ ପ୍ରଦର୍ଶନ ପାଇଁ ଲୋକଙ୍କୁ ଖାଦ୍ୟ ପରଷା ଏବଂ ଖାଦ୍ୟ ସ୍ୱାଦ ଇଭେଣ୍ଟର ଆୟୋଜନ କରାଯାଉଛି ।

ହକି ବିଶ୍ୱକପ୍ ସମୟରେ ସମଗ୍ର ରାଜ୍ୟରେ ବିଭିନ୍ନ ପଦକ୍ଷେପ ମାଧ୍ୟମରେ ମିଲେଟ୍‌କୁ ବ୍ୟାପକଭାବେ ପ୍ରୋତ୍ସାହନ ଦିଆଯାଇଥିଲା । ଏହି ପ୍ରୋତ୍ସାହନ ମାଧ୍ୟମରେ ହକି ବିଶ୍ୱକପ୍ ଭେନ୍ୟୁରେ ଓ ହକି ବିଶ୍ୱକପ୍ ଜିଲ୍ଲା ଭ୍ରମଣ ସମୟରେ ମିଲେଟ୍ ଷ୍ଟଲ, କାଫେ ଏବଂ ଆଉଟଲେଟ୍ ସ୍ଥାପନ କରାଯାଇଥିଲା । ସଚେତନତା ବୃଦ୍ଧି ନିମନ୍ତେ ରାଜଧାନୀ ତଥା ଅନ୍ୟାନ୍ୟ ସହରାଞ୍ଚଳରେ ମିଲେଟ୍ କାଫେ ଏବଂ ଆଉଟଲେଟ୍ ଖୋଲାଯାଇଥିଲା । ଅଧିକ ସଂଖ୍ୟକ ଦର୍ଶକଙ୍କ ନିକଟରେ ପହଞ୍ଚିବା ପାଇଁ ଅନେକ ପ୍ରୋତ୍ସାହନମୂଳକ କାର୍ଯ୍ୟକ୍ରମ ଆୟୋଜିତ ହୋଇଥିଲା । ଶିଶିର ସରସ ମେଳା , ଭୁ-ଫେଷ୍ଟ, ସିଟି ଫେଷ୍ଟ, ଆଦିବାସୀ ମେଳା , ତୋଷାଳି ମେଳା ଏବଂ ଭୁବନେଶ୍ୱରର ଜିଲ୍ଲା ଖାଦ୍ୟ ମେଳା ପରି ଉତ୍ସବରେ ମିଲେଟ୍ ଷ୍ଟଲ ପ୍ରଦର୍ଶିତ ହୋଇଥିଲା । ସେଠାରେ ମିଲେଟ୍ ଟେଷ୍ଟିଂ ଅଧିବେଶନ, କୁଇଜ୍ ପ୍ରତିଯୋଗିତା ଏବଂ ସଚେତନତା କାର୍ଯ୍ୟକ୍ରମ ବିଦ୍ୟାଳୟ ଏବଂ ଶିକ୍ଷାନୁଷ୍ଠାନଗୁଡ଼ିକରେ ଆୟୋଜିତ ହୋଇଥିଲା । ଏହି ପ୍ରୟାସ କ୍ରୀଡ଼ା ଏବଂ ମହୋତ୍ସବ ପରିସର ବାହାରେ ମଧ୍ୟ ବିସ୍ତାରିତ । ଉଦାହରଣ ସ୍ୱରୂପ, ନୂଆଦିଲ୍ଲୀରେ ଓଡ଼ିଶା ଭବନର ମେନ୍ୟୁରେ ମିଲେଟ୍‌କୁ ସାମିଲ୍ କରାଯାଇଥିଲା । ହୋଟେଲ ଏବଂ ରେସ୍ତୋରାଁ ଆସୋସିଏସନ୍ ସହଯୋଗରେ ମିଲେଟ୍‌ଗୁଡ଼ିକୁ ରେସ୍ତୋରାଁ ମେନ୍ୟୁ, ବିଭିନ୍ନ ସୂଚନା ଶିକ୍ଷା ଏବଂ ଯୋଗାଯୋଗ କାର୍ଯ୍ୟକ୍ରମ ତଥା ଫୁଡ୍ ଇଭେଣ୍ଟରେ ସ୍ଥାନିତ କରାଯାଇଛି । ଲକ୍ଷ୍ନୌରେ ଜାତୀୟ ଜଳବାୟୁ ସମ୍ମିଳନୀ ଏବଂ ଭୁବନେଶ୍ୱରରେ 'ଅକ୍ଷୟ ତୃତୀୟା' ଉତ୍ସବ ପାଳନ ସମେତ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମରେ ପ୍ରଦର୍ଶନୀ ଏବଂ ଷ୍ଟଲ୍‌ଗୁଡ଼ିକ ଆୟୋଜିତ ହୋଇଥିଲା । ଏମ୍ସ, ଭୁବନେଶ୍ୱର ଭଳି ହାଉସିଂ ସୋସାଇଟି ଏବଂ ମେଡିକାଲ୍ ଅନୁଷ୍ଠାନ ମଧ୍ୟ ମିଲେଟ୍ ସ୍ୱାଦ କାର୍ଯ୍ୟକ୍ରମ ଏବଂ ସଚେତନତା ଅଭିଯାନର ଆୟୋଜନ କରିଥିଲେ । ଏହି ବହୁମୁଖୀ କାର୍ଯ୍ୟକ୍ରମର ଲକ୍ଷ୍ୟ ହେଉଛି ମିଲେଟ୍‌ର ଉପକାରିତା ବିଷୟରେ ସଚେତନତା ସୃଷ୍ଟି କରିବା ଏବଂ ସୁସ୍ଥ ଓ ସ୍ଥାୟୀ ଖାଦ୍ୟପେୟର ବିକଳ୍ପ ଭାବରେ ପୁଷ୍ଟିଶସ୍ୟ ବ୍ୟବହାରକୁ ପ୍ରୋତ୍ସାହିତ କରିବା । ବିଭିନ୍ନ ସଂଗଠନ ଏବଂ ଅନୁଷ୍ଠାନର ମିଳିତ ପ୍ରୟାସ ଓଡ଼ିଶାରେ ମିଲେଟ୍‌ର ଗୁରୁତ୍ୱ ବିଷୟରେ ବାର୍ତ୍ତା ପ୍ରସାର କରିବାରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରୁଛନ୍ତି ।

ଓଡ଼ିଶା ମିଲେଟ୍ସ ମିଶନ କାର୍ଯ୍ୟକ୍ରମରେ ହସ୍ପିଟାଲରେ ଆୟୋଜିତ ମିଲେଟ୍ ଟେଷ୍ଟିଂ ଇଭେଣ୍ଟରେ ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡିକାଲ ସାଇନ୍ସର ନିର୍ଦ୍ଦେଶକ ଡା. ଆଶୁତୋଷ ବିଶ୍ୱାସ ଉତ୍ତମ ମତ ପୋଷଣ କରିଛନ୍ତି ।

ଖାଦ୍ୟ ଉତ୍ସବ, ରନ୍ଧନ ପ୍ରତିଯୋଗିତା ଏବଂ ରେସିପି ଅନ୍‌ଲାଇନ୍ ଏବଂ ସୋସିଆଲ ମିଡ଼ିଆ ମାଧ୍ୟମରେ ସୁସ୍ୱାଦୁ ମିଲେଟ୍ ପ୍ରସ୍ତୁତି ଲୋକପ୍ରିୟ ହୋଇପାରିଛି । ରାଜ୍ୟ ତଥା ଜିଲ୍ଲାସ୍ତରୀୟ ଖାଦ୍ୟ ମହୋତ୍ସବରେ ସ୍ଥାନୀୟ ମିଲେଟ୍ ଆଧାରିତ ରୋଷେଇ ଏବଂ ସାଂସ୍କୃତିକ କାର୍ଯ୍ୟକ୍ରମ କରାଯାଉଛି । ଅଗ୍ରଣୀ ଖାଦ୍ୟ ବ୍ରାଣ୍ଡ ସହିତ ସହଯୋଗ ସ୍ଥାପନ କରି ମିଲେଟ୍-ଆଧାରିତ ଉତ୍ପାଦକୁ ମୁଖ୍ୟସ୍ରୋତରେ ପରିଚିତ କରାଯାଉଛି । ଉପଭୋକ୍ତା ସଚେତନତା ସୃଷ୍ଟି କରିବା ସହ ଉପଲବ୍ଧତାକୁ ସୁନିଶ୍ଚିତ କରିବା ସହିତ ମିଲେଟ୍‌ଗୁଡ଼ିକୁ ସହରାଞ୍ଚଳ ଏବଂ ଗ୍ରାମାଞ୍ଚଳରେ ବ୍ୟବହାରକୁ ବୃଦ୍ଧି କରିବାର ସଫଳତା ମିଳିଛି ।

**ସହଭାଗିତା**

ପୁଷ୍ଟିକର ଖାଦ୍ୟ ଏବଂ ଖାଦ୍ୟ ନିରାପତ୍ତାକୁ ଉତ୍ସାହିତ କରିବାର ଲକ୍ଷ୍ୟ ରଖି ଓଡ଼ିଶା ମିଲେଟ୍ସ ମିଶନ୍ ମିଲେଟ୍‌ର ସମ୍ଭାବନାକୁ ଜାଣିବା ପାଇଁ ବିଭିନ୍ନ ଅନୁଷ୍ଠାନ ସହ ସହଭାଗିତାର ସହ କାର୍ଯ୍ୟ କରୁଛି । ଇଣ୍ଡିଆନ୍ ଇନଷ୍ଟିଚ୍ୟୁଟ୍ ଅଫ୍ ମିଲେଟ୍ସ ରିସର୍ଚ୍ଚ ସହିତ କାର୍ଯ୍ୟ କରି ଓଡ଼ିଶା ମିଲେଟ୍ସ ମିଶନ୍ ଅଭିନବ ମିଲେଟ୍ କିସମର ବିକାଶ ଏବଂ ଖାଦ୍ୟ ଓ ପ୍ରୟୋଗରେ ଏହାର ଉପଯୋଗକୁ ପ୍ରୋତ୍ସାହିତ କରିବାକୁ ପ୍ରତିବଦ୍ଧ । ଏହାଛଡ଼ା ସେଣ୍ଟ୍ରାଲ୍ ଫୁଡ୍ ଟେକ୍ନୋଲୋଜିକାଲ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌ର ସହଯୋଗରେ, ଓଡ଼ିଶା ମିଲେଟ୍ସ ମିଶନ୍ ମିଲେଟ୍ ପ୍ରକ୍ରିୟାକରଣ ପ୍ରଯୁକ୍ତିକୁ ଆଗେଇ ନେବାକୁ ପ୍ରୟାସ ଜାରି ରଖିଛି । ପୁଷ୍ଟିଶସ୍ୟର ବିଭିନ୍ନ ସ୍ୱାସ୍ଥ୍ୟଗତ ଉପକାରିତା ବିଷୟରେ ଅନୁସନ୍ଧାନ କରିବା ପାଇଁ ଓଡ଼ିଶା ମିଲେଟ୍ସ ମିଶନ୍ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ସହିତ ମିଳିତ ଅନୁସନ୍ଧାନ କରୁଛି । ଅଧିକନ୍ତୁ, ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ ସହିତ ମିଳିତଭାବେ ଅପପୁଷ୍ଟିର ମୁକାବିଲା ପାଇଁ ମିଲେଟ୍‌କୁ ଖାଦ୍ୟ ସହାୟତା କାର୍ଯ୍ୟକ୍ରମରେ ମିଶାଇବାକୁ ଲକ୍ଷ୍ୟ ରଖିଛି । ଏହି ସାମୂହିକ ପ୍ରୟାସର ମୂଳ ଲକ୍ଷ୍ୟ ହେଉଛି ପୁଷ୍ଟିଶସ୍ୟର ସମ୍ଭାବନାକୁ ସମ୍ପୂର୍ଣ୍ଣ ରୂପେ ଉନ୍ମୋଚନ କରିବା ଏବଂ ପୁଷ୍ଟିକର ଖାଦ୍ୟ ତଥା ଖାଦ୍ୟ ନିରାପତ୍ତା ସହିତ ଜଡ଼ିତ ଗୁରୁତ୍ୱପୂର୍ଣ୍ଣ ଆହ୍ୱାନର ସମାଧାନ କରିବା ।

ଖାଦ୍ୟ ଏବଂ କୃଷି ସଂଗଠନ ସହିତ ମିଳିତ ଭାବରେ କାର୍ଯ୍ୟ କରି, ଓଡ଼ିଶା ମିଲେଟ୍ସ ମିଶନ୍ ବିହନ ବ୍ୟବସ୍ଥାର ଭୂପ୍ରଜାତି, ଅନ୍ତର୍ଜାତୀୟ ମିଲେଟ୍ ବର୍ଷ ପାଇଁ ନୀତି ସହାୟତା ଏବଂ ମିଲେଟ୍ ଅନ୍ତର୍ଜାତୀୟ ସମ୍ମିଳନୀରେ ସକ୍ରିୟ ଅଂଶଗ୍ରହଣ ସହିତ ପ୍ରଭାବଶାଳୀ ପ୍ରକଳ୍ପ ଆରମ୍ଭ କରିଛି । ଏହା ସହିତ ଓଡ଼ିଶା ମିଲେଟ୍ସ ମିଶନ୍, ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ ସହିତ ନୀତି ପ୍ରଚାର, ଜ୍ଞାନ ବିନିମୟ କାର୍ଯ୍ୟକ୍ରମ ଏବଂ ମିଲେଟ୍ ସମ୍ବନ୍ଧୀୟ ସାମଗ୍ରୀର ପ୍ରସାରକୁ ଦୃଢ଼ିଭୂତ କରିବା ପାଇଁ ସହଯୋଗ କରିଛି । ଏହି ସହଯୋଗ ମିଶନର ପ୍ରଭାବକୁ ଯଥେଷ୍ଟ ବୃଦ୍ଧି କରିଛି ଏବଂ ବିଶ୍ୱସ୍ତରରେ ଓଡ଼ିଶାର ପୁଷ୍ଟିଶସ୍ୟ ଆନ୍ଦୋଳନକୁ ବୃଦ୍ଧି କରିଛି । ଅଧିକନ୍ତୁ, ଏମ୍.ଏସ୍. ସ୍ୱାମୀନାଥନ ଗବେଷଣା ପ୍ରତିଷ୍ଠାନର ସହଯୋଗରେ ମିଲେଟ୍ ଉପରେ ବ୍ୟାପକ ଗବେଷଣା, ସେଗୁଡ଼ିକର ପୁଷ୍ଟିକାରକ ସମ୍ଭାବନାଜନିତ ଅନୁସନ୍ଧାନ ଏବଂ ସ୍ଥାୟୀ ବିହନ ପ୍ରଣାଳୀ ପ୍ରତିଷ୍ଠା ପାଇଁ ଭିତ୍ତିପ୍ରସ୍ତର ସ୍ଥାପନ କରିଛି । ସେହିପରି ମିଲେଟ୍ସ ମିଶନ ଓଡ଼ିଶାରେ ଆଦିବାସୀମାନଙ୍କ ମିଲେଟ୍ ଆଧାରିତ ଖାଦ୍ୟାଭ୍ୟାସ ଉପରେ ଏକ ବ୍ୟାପକ ପରିବର୍ତ୍ତନର ଚିହ୍ନଟ ନିମନ୍ତେ ଅଧ୍ୟୟନ କରିବା ପାଇଁ ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି ଗବେଷଣା ଏବଂ ତାଲିମ ପ୍ରତିଷ୍ଠାନ ସହିତ ସହଭାଗୀ ହୋଇଛି ।

ଓଡ଼ିଶା ମିଲେଟ୍ସ ମିଶନ୍ ବିଭିନ୍ନ ସଙ୍ଗଠନ ଏବଂ ଆନୁଷଙ୍ଗିକ ସରକାରୀ ବିଭାଗ ସମେତ ବିଭିନ୍ନ ହିତାଧିକାରୀଙ୍କ ସହ ଉତ୍ପାଦନକାରୀ ଭାଗିଦାରୀରେ ସଫଳତାର ସହ ନିୟୋଜିତ ହୋଇଛି । ଉଲ୍ଲେଖଯୋଗ୍ୟ ଯେ ରେସ୍ତୋରାଁ ଆସୋସିଏସନ୍ ଅଫ୍ ଓଡ଼ିଶା ଏବଂ ହୋଟେଲ୍ ଆଣ୍ଡ ରେସ୍ତୋରାଁ ଆସୋସିଏସନ୍ ଅଫ୍ ଓଡ଼ିଶା ମିଲେଟ୍‌ଭିତ୍ତିକ ଖାଦ୍ୟକୁ ମେନ୍ୟୁରେ ଯୋଡ଼ିବାରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରୁଛନ୍ତି, ଯାହାଦ୍ୱାରା ସହରାଞ୍ଚଳବାସୀଙ୍କ ମଧ୍ୟରେ ସଚେତନତା ବୃଦ୍ଧି ପାଉଛି । ମିଲେଟ୍ ରେସିପି ଉପରେ ତାଲିମ ପ୍ରଦାନ ପାଇଁ ଓଡ଼ିଶା ମିଲେଟ୍ସ ମିଶନ ଦ୍ୱାରା ଭୁବନେଶ୍ୱରରେ ଥିବା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହୋଟେଲ ମ୍ୟାନେଜମେଣ୍ଟ ସହିତ ସହଯୋଗ ସ୍ଥାପନ କରିଥିଲା । ଏହି

ପ୍ରଶିକ୍ଷଣ ଅଧିବେଶନରେ ରାଜ୍ୟର ଖ୍ୟାତିସମ୍ପନ୍ନ ହୋଟେଲଗୁଡ଼ିକର ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟା ଏବଂ ସେଫ୍ ଅଂଶଗ୍ରହଣ କରିଥିଲେ। ଏହାର ଲକ୍ଷ୍ୟ ଥିଲା- ସ୍ଥାନୀୟ ସମ୍ପ୍ରଦାୟ ଏବଂ ଖାଦ୍ୟପ୍ରେମୀମାନଙ୍କ ମଧ୍ୟରେ ମିଲେଟ୍ ବ୍ୟବହାର କରି ସୁସ୍ୱାଦୁ ଏବଂ ପୁଷ୍ଟିକର ଖାଦ୍ୟ ପ୍ରସ୍ତୁତ କରିବା। ଇନ୍ଷ୍ଟିଚ୍ୟୁଟ୍ ଅଫ୍ ହୋଟେଲ ମ୍ୟାନେଜମେଣ୍ଟ ଭୁବନେଶ୍ୱର ସହ ସହଭାଗୀ ହୋଇ ସରକାର ଅଭିନବ ମିଲେଟ୍ ଭୋଜନ ବିକଳ୍ପକୁ ପ୍ରୋତ୍ସାହିତ କରିବା ପାଇଁ ରୋଷେଇ ଜ୍ଞାନକୌଶଳ ଲାଭ କରିଥିଲେ । ଓୟୁଏଟି ଏବଂ ଏକ୍ସଆଇଏମବି ପରି ସମ୍ମାନଜନକ ଶିକ୍ଷାନୁଷ୍ଠାନଗୁଡ଼ିକ ପୁଷ୍ଟିଶସ୍ୟର ସ୍ୱାଦ ଇଭେଣ୍ଟ ଏବଂ ପ୍ରଭାବଶାଳୀ ବ୍ରାଣ୍ଡିଂ କାର୍ଯ୍ୟକ୍ରମ, ମିଲେଟ୍‌ର ବହୁମୁଖିତା ପ୍ରଦର୍ଶନ କରିବାରେ ମୂଲ୍ୟବାନ ଅଂଶୀଦାର ହୋଇପାରିଛନ୍ତି। କ୍ରୀଡ଼ା ଏବଂ ଯୁବ ସେବା ବିଭାଗ ସହିତ ମିଳିତ ସହଯୋଗରେ ଭାରତୀୟ ହକି ଦଳ ସହିତ ମିଲେଟ୍ ସ୍ୱାଦ ଇଭେଣ୍ଟ ଏବଂ କ୍ରୀଡ଼ା ହଷ୍ଟେଲ ମେନ୍ୟୁରେ ମିଲେଟ୍ ଖାଦ୍ୟ ସାମଗ୍ରୀକୁ ଅନ୍ତର୍ଭୁକ୍ତ କରାଯାଇଛି । ମନୋରଞ୍ଜନ ପାର୍କ ଏବଂ ପର୍ବପର୍ବାଣିରେ ମିଲେଟ୍ ସଚେତନତା ସୃଷ୍ଟି କରିବା ପାଇଁ ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷ (ବିଡିଏ) ମିଶନ ସହ ସହଯୋଗ କରିଥିବାବେଳେ ଭୁବନେଶ୍ୱର ମହାନଗର ନିଗମ (ବିଏମସି) ପ୍ରାଚୀର ଚିତ୍ର ଏବଂ ହୋର୍ଡିଂ ମାଧ୍ୟମରେ ସଚେତନତା ସୃଷ୍ଟି କରିବାରେ ସହଯୋଗ କରିଛି। ଅଧିକନ୍ତୁ, ଅଲ୍ ଇଣ୍ଡିଆ ଇନଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍ସ, ଭୁବନେଶ୍ୱର ମିଲେଟ୍‌କୁ ଅନ୍ତର୍ଭୁକ୍ତ କରି ରୋଗୀଙ୍କ ଖାଦ୍ୟର ପୁଷ୍ଟିକର ମୂଲ୍ୟ ବୃଦ୍ଧି ଦିଗରେ ପଦକ୍ଷେପ ନେଇଛି। କୃଷି ଏବଂ କୃଷକ ସଶକ୍ତିକରଣ ବିଭାଗ 'ଫିକି' ସହିତ ସହଭାଗୀ ହୋଇ ଅନ୍ତର୍ଜାତୀୟ ମିଲେଟ୍-୨୦୨୩ ବର୍ଷ ପାଳନ କରିବା ସହ ସମାଜର ସମସ୍ତ ବର୍ଗ ନିକଟରେ ପହଞ୍ଚିବା ଏବଂ ବିଭିନ୍ନ ଜନସଂଖ୍ୟା ମଧ୍ୟରେ ମିଲେଟ୍‌କୁ ପ୍ରୋତ୍ସାହିତ କରିବା ପାଇଁ ମିଶନର ବ୍ୟାପକ ଉତ୍ସର୍ଗୀକୃତ ପ୍ରଦର୍ଶନ କରିଛି ।

ଜିଲ୍ଲାର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିବା ପାଇଁ ଓଡ଼ିଶା ମିଲେଟ୍ସ ମିଶନ ସୁଗମକାରୀ ସଂସ୍ଥା ଉପରେ ନିର୍ଭର କରେ। ଏହି ସଂସ୍ଥାଗୁଡ଼ିକୁ ତିନି ପ୍ରକାର ଦାୟିତ୍ୱ ନ୍ୟସ୍ତ କରାଯାଇଛି। ପ୍ରଥମେ- ସେମାନେ ବ୍ୟାପକ ସଚେତନତା ଅଭିଯାନ, କୃଷକ ତାଲିମ କାର୍ଯ୍ୟକ୍ରମ ଏବଂ ବିହନ, ସାର ଓ କୀଟନାଶକ ଭଳି ଅତ୍ୟାବଶ୍ୟକ ସମ୍ବଳ ଯୋଗାଣ ମାଧ୍ୟମରେ ସକ୍ରିୟ ଭାବରେ ମିଲେଟ୍ ଚାଷକୁ ପ୍ରୋତ୍ସାହିତ କରୁଛନ୍ତି । କୃଷକମାନଙ୍କୁ ପୁଷ୍ଟିଶସ୍ୟ ବିଷୟରେ ଶିକ୍ଷା ଦେବା ଏବଂ ଚାଷ ବିଷୟରେ ଜାଣିବା ଦ୍ୱାରା ସେମାନେ ମିଲେଟ୍ ଚାଷକୁ ଗ୍ରହଣ କରୁଛନ୍ତି। ଦ୍ୱିତୀୟତଃ- ଏହି ସଂସ୍ଥାଗୁଡ଼ିକ କୃଷକ ଏବଂ କ୍ରେତାଙ୍କ ମଧ୍ୟରେ ବ୍ୟବଧାନକୁ ଦୂର କରି ମିଲେଟ୍ ବିକ୍ରିବଟାକୁ ସୁଗମ କରୁଛନ୍ତି। ସେମାନେ ମୂଲ୍ୟଯୋଗ ପାଇଁ ସହାୟତା ପ୍ରଦାନ କରି ମଣ୍ଡିରେ କିପରି ବିକ୍ରୟ କରିବେ ସେ ବିଷୟରେ କୃଷକମାନଙ୍କୁ ମାର୍ଗଦର୍ଶନ ଦେବା ସହିତ ବଜାର ମୂଲ୍ୟ ଉପରେ ସେମାନଙ୍କୁ ଅବଗତ କରାଉଛନ୍ତି । ଅଧିକନ୍ତୁ, ସେମାନେ ମିଲେଟ୍‌କୁ ପ୍ରକ୍ରିୟାକୃତ ଦ୍ରବ୍ୟରେ ମଇଦା, ଜଳଖିଆ ଏବଂ ପୋରିଜ୍‌କୁ ରୂପାନ୍ତର କରିବାରେ ସାହାଯ୍ୟ କରି ସେମାନଙ୍କର ବଜାର କ୍ଷମତା ବୃଦ୍ଧି କରିଥାନ୍ତି। ଶେଷରେ, ସୁଗମକାରୀ ସଂସ୍ଥାଗୁଡ଼ିକ ମିଶନ କାର୍ଯ୍ୟକାରିତା ଉପରେ ନଜର ରଖିବେ ଏବଂ ମିଲେଟ୍ ସମ୍ବନ୍ଧୀୟ ଅନୁସନ୍ଧାନର ପରିଚାଳନା ଦାୟିତ୍ୱ ଗ୍ରହଣ କରିବେ। ମିଶନ ଅଗ୍ରଗତିକୁ ସେମାନେ ତ୍ୱରାନ୍ୱିତ କରି ମିଲେଟ୍ ଚାଷ ଏବଂ କିଣାବିକା ଉପରେ ବିସ୍ତୃତ ତଥ୍ୟ ସଂଗ୍ରହ ସହିତ ମିଲେଟ୍‌ଗୁଡ଼ିକର ପୁଷ୍ଟିକର ମହତ୍ତ୍ୱକୁ ଉନ୍ମୋଚନ କରିବାକୁ ଅନୁସନ୍ଧାନରେ ନିୟୋଜିତ ଅଛନ୍ତି। ସରକାର, କୃଷକ ଏବଂ ହିତାଧିକାରୀଙ୍କ ସହ ଘନିଷ୍ଠ ସହଯୋଗରେ କାର୍ଯ୍ୟ କରି ଏହି ସଂସ୍ଥାଗୁଡ଼ିକ ମିଶନର ସାମଗ୍ରିକ ସଫଳତାର ଭାର ବହନ କରୁଛନ୍ତି । ମିଲେଟ୍ ସମ୍ବନ୍ଧୀୟ ଲାଭଗୁଡିକର ପ୍ରଭାବଶାଳୀ କାର୍ଯ୍ୟକାରିତା ଏବଂ ପ୍ରସାର ସୁନିଶ୍ଚିତ କରି, ସେମାନେ ମିଶନର ଉଦ୍ଦେଶ୍ୟ ପୂରଣ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରି ଉଭୟ କୃଷକ ଏବଂ ଉପଭୋକ୍ତାଙ୍କୁ ମଧ୍ୟ ଉପକୃତ କରାଉଛନ୍ତି ।

ଭୁବନେଶ୍ୱରର ଇନ୍ଷ୍ଟିଚ୍ୟୁଟ୍ ଅଫ୍ ହୋଟେଲ ମ୍ୟାନେଜମେଣ୍ଟରେ ଆୟୋଜିତ ମିଲେଟ୍‌ଭିତ୍ତିକ ଖାଦ୍ୟ ପରିପ୍ରେକ୍ଷୀରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଖ୍ୟାତିସମ୍ପନ୍ନ ହୋଟେଲର ସେଫ୍‌ମାନେ ଯୋଗ ଦେଇଥିଲେ ।




(ଭୁବନେଶ୍ୱରସ୍ଥିତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହୋଟେଲ୍ ମ୍ୟାନେଜ୍‌ମେଣ୍ଟ ପରିସରରେ ଆୟୋଜିତ ପୁଷ୍ଟିଶସ୍ୟ ଆଧାରିତ ରେସିପି ପ୍ରଶିକ୍ଷଣରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ସୁନାମଧନ୍ୟ ହୋଟେଲଗୁଡ଼ିକର ସେଫ୍‌ମାନେ ଅଂଶଗ୍ରହଣ କରିଥିଲେ)

**ଅନ୍ତର୍ଜାତୀୟ ମିଲେଟ୍ସ ବର୍ଷ- ମାଣ୍ଡିଆ ଦିବସରୁ ଅନ୍ତର୍ଜାତୀୟ ମିଲେଟ୍ ସମ୍ମିଳନୀ**

ଅନ୍ତର୍ଜାତୀୟ ମିଲେଟ୍ ବର୍ଷ-୨୦୨୩ ଅନୁଯାୟୀ, ଓଡ଼ିଶା ମିଲେଟ୍ସ ମିଶନ ମାଧ୍ୟମରେ ମିଲେଟ୍ ପ୍ରଚାର ପ୍ରସାର କରିବାରେ ଏକ ଅଗ୍ରଦୂତ ଭାବରେ ଉଭା ହୋଇଛି । ଓଡ଼ିଶା ମିଲେଟ୍ସ ମିଶନ ଆଦିବାସୀ ସମ୍ପ୍ରଦାୟ, ମହିଳା ଏବଂ କୃଷକମାନଙ୍କୁ ସଶକ୍ତ ଓ ପ୍ରୋତ୍ସାହିତ କରୁଛି ।




(ଭୁବନେଶ୍ୱରର ସାଇ ଇରନ୍ୟାସନାଲ ସ୍କୁଲ ପରିସରରେ ଓଡ଼ିଶା ମିଲେଟ୍ସ ମିଶନ ଏବଂ ପୁଷ୍ଟିଶସ୍ୟର ସ୍ୱାସ୍ଥ୍ୟ ଉପଯୋଗିତା ଉପରେ କୃଷି ଓ ଖାଦ୍ୟ ଉତ୍ପାଦନ ନିର୍ଦ୍ଦେଶକଙ୍କ ଅଭିଭାଷଣ ପ୍ରଦାନ)

ସରକାର, ବେସରକାରୀ ସଂସ୍ଥା ଏବଂ ଗବେଷଣା ପ୍ରତିଷ୍ଠାନଗୁଡ଼ିକର ସହଯୋଗରେ ଓଡ଼ିଶା ମିଲେଟ୍ସ ମିଶନ ସାମଗ୍ରିକ ଭାବେ ଏହାକୁ ବିଶ୍ୱସ୍ତରରେ ମିଲେଟ୍‌ର ପ୍ରୋତ୍ସାହନ ପାଇଁ ଏକ ମଡେଲ୍ ହୋଇପାରିଛି । ନଭେମ୍ବର ୧୦, ୨୦୨୨ରେ ବହୁ ସଫଳତାର ସହ ଉଦ୍‌ଘାଟିତ ମାଣ୍ଡିଆ ଦିବସକୁ ମାନ୍ୟବର ମୁଖ୍ୟମନ୍ତ୍ରୀ ବାର୍ଷିକ କାର୍ଯ୍ୟକ୍ରମ ଭାବେ ଘୋଷଣା କରିଛନ୍ତି । ଅନ୍ତର୍ଜାତୀୟ ମିଲେଟ୍ସ ବର୍ଷ ପାଳନ ଅବସରରେ ନଭେମ୍ବର ୯ ଓ ୧୦, ୨୦୨୩ରେ ମିଲେଟ୍ସ ଉପରେ ଏକ ଅନ୍ତର୍ଜାତୀୟ ସମ୍ମିଳନୀ ଆୟୋଜିତ ହେଉଛି । ଓଡ଼ିଶା ମିଲେଟ୍ସ ମିଶନ 'ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ'ରେ ଶିଳ୍ପ ସହ ସହଭାଗୀ ହୋଇଛି । ମିଶନ ଶକ୍ତି ଏବଂ ଭାରତୀୟ ହକି ଦଳ ପୁଷ୍ଟିକର ଖାଦ୍ୟକୁ ଗୁରୁତ୍ୱ ଦେଇ ମିଲେଟ୍ ଶକ୍ତି ଆଉଟ୍‌ଲେଟ୍ ଖୋଲିବାରେ ସହଯୋଗ କରିଥିଲେ ।




(ଭୁବନେଶ୍ୱର କଳିଙ୍ଗ ଷ୍ଟାଡିୟମ୍‌ଠାରେ ହକି ବିଶ୍ୱକପ୍ ୨୦୨୩ ଅବସରରେ ଭାରତୀୟ ହକି ଦଳର ସଦସ୍ୟମାନେ ପୁଷ୍ଟିଶସ୍ୟଭିତ୍ତିକ ଖାଦ୍ୟଦ୍ରବ୍ୟର ମଜା ନେଉଛନ୍ତି)

ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷ, ଭୁବନେଶ୍ୱର ମହାନଗର ନିଗମ ଏବଂ କୃଷି ଓ କୃଷକ ସଶକ୍ତିକରଣ ବିଭାଗ, ଭୁବନେଶ୍ୱରରେ ମିଳିତଭାବେ ମିଲେଟ୍ କଳାକୃତି ତିଆରି କରିଥିଲେ । ୟୁଏଇକୁ ପ୍ରଥମ ମିଲେଟ୍ ରପ୍ତାନିରେ କୃଷି ଏବଂ ପ୍ରକ୍ରିୟାକୃତ ଖାଦ୍ୟ ଦ୍ରବ୍ୟ ରପ୍ତାନି ବିକାଶ ପ୍ରାଧିକରଣ, ମିଶନ ଶକ୍ତି ଏବଂ କୃଷି ଓ କୃଷକ ସଶକ୍ତିକରଣ ବିଭାଗ ଯୋଗାଣରେ ସୁଗମ କରିଥିଲେ । ସ୍ଥାନୀୟ କିସମର

ସଂରକ୍ଷଣ ପାଇଁ ରାଜ୍ୟ ଉଚ୍ଚ ଅମଳକ୍ଷମ, ପୁଷ୍ଟିକର ମାଣ୍ଡିଆ ଭୂ-ପ୍ରଜାତି ବିକାଶ କୃଷି ଓ କୃଷକ ସଶକ୍ତିକରଣ ବିଭାଗ ଏବଂ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଅଣ-ମାଣ୍ଡିଆ କ୍ଷୁଦ୍ରଶସ୍ୟର ମୂଲ୍ୟ ନିର୍ଦ୍ଧାରଣ କରୁଛନ୍ତି । ଓଡ଼ିଶାର ଅନ୍ତର୍ଜାତୀୟ ମିଲେଟ୍ ବର୍ଷ ପାଳନ ଢାଞ୍ଚାରେ ମିଲେଟ୍‌କୁ କ୍ରୀଡା, ଜନଜାତି, ଲିଙ୍ଗ, ପୋଷଣୀୟ ବିକାଶ ଲକ୍ଷ୍ୟ ଏବଂ ଇଭେଣ୍ଟ ସହିତ ସଂଯୋଗ କରିଥାଏ । ଏହା ଆଦିବାସୀ ସମ୍ପ୍ରଦାୟକୁ ଗୁରୁତ୍ୱ ଦେଇଥାଏ ଏବଂ ମହିଳା ଓ କୃଷକମାନଙ୍କୁ ସଶକ୍ତ କରିଥାଏ । ଓଡ଼ିଶା ମିଲେଟ୍ସ ମିଶନ ଅନୁସୂଚିତ ଜାତି ଏବଂ ଅନୁସୂଚିତ ଜନଜାତି ଗବେଷଣା ଏବଂ ତାଲିମ ପ୍ରତିଷ୍ଠାନ ସହିତ ଆଦିବାସୀ ଖାଦ୍ୟ ସଂସ୍କୃତି ତଥ୍ୟାବଳୀ ପ୍ରସ୍ତୁତ କରୁଛି । ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ ସହିତ ଓଡ଼ିଶା ମିଲେଟ୍ସ ମିଶନ ମହିଳା ଏବଂ କୃଷକମାନଙ୍କୁ ସଶକ୍ତ କରିବା ପାଇଁ ଜ୍ଞାନ ଆଦାନ ପ୍ରଦାନ କରୁଛି । ଇଣ୍ଡିଆନ୍ ଇନଷ୍ଟିଚ୍ୟୁଟ୍ ଅଫ୍ ମିଲେଟ୍ସ ରିସର୍ଚ୍ଚ ବିହନ ପ୍ରଣାଳୀ ପାଇଁ ଏକ ମାର୍ଗଦର୍ଶିକା ବିକାଶରେ ସାହାଯ୍ୟ କରୁଛି । ଅନ୍ତର୍ଜାତୀୟ ମିଲେଟ୍ ବର୍ଷ ପାଳନ ମାଧ୍ୟମରେ ଓଡ଼ିଶା ଆଦିବାସୀ ସମ୍ପ୍ରଦାୟ, ମହିଳା ଏବଂ କୃଷକମାନଙ୍କୁ ସଶକ୍ତ କରୁଥିବାବେଳେ ସହରଠାରୁ ଆରମ୍ଭ କରି ଗ୍ରାମ ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ମିଲେଟ୍‌କୁ ଆଗରେ ରଖିଛି ।

### ଯୋଜନା ଅନ୍ତର୍ଭୁକ୍ତ ସଫଳତା

ଓଡ଼ିଶା ମିଲେଟ୍ସ ମିଶନ ଆରମ୍ଭରୁ ଅନେକ ସଫଳତା ହାସଲ କରିଛି । କୃଷି ଓ କୃଷକ କଲ୍ୟାଣ ମନ୍ତ୍ରାଳୟ ଏବଂ ଜାତିସଂଘ, କୃଷି ଓ ଖାଦ୍ୟ ସଂଗଠନ ପୁଷ୍ଟିଶସ୍ୟ ଉପରେ ଜାତୀୟ ସମ୍ମିଳନୀରେ ଓଡ଼ିଶା ସର୍ବୋତ୍ତମ ପ୍ରଦର୍ଶନକାରୀ ଓ ମିଲେଟ୍ ପ୍ରୋତ୍ସାହନକାରୀ ରାଜ୍ୟ ଭାବେ ମାନ୍ୟତା ଦେଇଛନ୍ତି । କୃଷି ଓ କୃଷକ କଲ୍ୟାଣ ମନ୍ତ୍ରାଳୟ, ଭାରତ ସରକାର ଏବଂ ନିତି ଆୟୋଗ ଓଡ଼ିଶା ମିଲେଟ୍ସ ମିଶନକୁ ସର୍ବୋତ୍ତମ ଢାଞ୍ଚା ଭାବେ ଚିହ୍ନଟ କରିଛନ୍ତି ଏବଂ ମିଲେଟ୍‌ର ପ୍ରୋତ୍ସାହନ ପାଇଁ ଅନ୍ୟ ରାଜ୍ୟ ସରକାରଙ୍କୁ ଓଡ଼ିଶା ମିଲେଟ୍ସ ମିଶନ ଆଭିମୁଖ୍ୟକୁ ଗ୍ରହଣ କରିବାକୁ କହିଛନ୍ତି । ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ ମଧ୍ୟ ଓଡ଼ିଶା ମିଲେଟ୍ସ ମିଶନକୁ ସର୍ବୋତ୍ତମ କାର୍ଯ୍ୟକ୍ରମ ଭାବରେ ଚିହ୍ନଟ କରିଛି, ଯାହା ଦକ୍ଷିଣ ରାଷ୍ଟ୍ର ସହଯୋଗର ଏକ ଅଂଶ ଭାବରେ ଅନ୍ୟ ରାଜ୍ୟ ତଥା ଆଫ୍ରିକାର ଅନ୍ୟ ଦେଶରେ ଅନୁସରଣ କରାଯାଇପାରିବ । ଏହା ବ୍ୟତୀତ ଓଡ଼ିଶା ମିଲେଟ୍ସ ମିଶନ୍ ବିଶ୍ୱରେ ପ୍ରଥମ ଥର ପାଇଁ ଭୂ-ପ୍ରଜାତି ନିମନ୍ତେ ଏକ ବିକଳ୍ପ ବିହନ ବ୍ୟବସ୍ଥା ପ୍ରସ୍ତୁତ କରିଛି । ସିଧାସଳଖ ପ୍ରୋତ୍ସାହନ ପ୍ରଦାନ ମାଧ୍ୟମରେ ପାଞ୍ଚ ବର୍ଷ ପାଇଁ କୃଷକମାନଙ୍କୁ ପ୍ରତ୍ୟକ୍ଷ ପ୍ରୋତ୍ସାହନ ଘୋଷଣା କରିବାରେ ଓଡ଼ିଶା ପ୍ରଥମ ରାଜ୍ୟ । ବିଭିନ୍ନ ବୈଜ୍ଞାନିକ ଅନୁଷ୍ଠାନର ବିଶେଷଜ୍ଞମାନଙ୍କର ଏକ ସ୍ୱୀକୃତିପ୍ରାପ୍ତ ପ୍ୟାନେଲ ମାଧ୍ୟମରେ ଗୌଣ ମିଲେଟ୍ ଯନ୍ତ୍ରପାତି ପାଇଁ ମାନକ ନିରୂପଣ କରିବାରେ ଏହା ପ୍ରଥମ ରାଜ୍ୟ ହୋଇପାରିଛି । ଦେଶରେ ପିଡିଏସରେ ମିଲେଟ୍ ବଣ୍ଟନ କରିବାରେ ଓଡ଼ିଶା ହେଉଛି ତୃତୀୟ ରାଜ୍ୟ । ଅଧିକନ୍ତୁ, ଓଡ଼ିଶା ମିଲେଟ୍ସ ମିଶନ ଅଧୀନରେ ଜିଲ୍ଲା ଖଣିଜ ପ୍ରତିଷ୍ଠାନର(ଡ଼ିଏମ୍ଏଫ୍) ସହାୟତା ଜରିଆରେ ମାଣ୍ଡିଆ ଲଡ୍ଡୁକୁ ଆଇସିଡିଏସରେ ଅନ୍ତର୍ଭୁକ୍ତ କରିଥିବା ହେତୁ ଓଡ଼ିଶା ପ୍ରଥମ ରାଜ୍ୟ ହୋଇଛି ।

### ସ୍ୱୀକୃତି ଓ ପ୍ରଭାବ

ଓଡ଼ିଶା ମିଲେଟ୍ସ ମିଶନ୍‌ର କାର୍ଯ୍ୟ ଏବଂ ପ୍ରଭାବ ପାଇଁ ମହତ୍ତ୍ୱପୂର୍ଣ୍ଣ ମାନ୍ୟତା ପାଇଛି । ମିଲେଟ୍, ଡାଲି ଏବଂ ତୈଳବୀଜ ପ୍ରଚାର ପାଇଁ ଓଡ଼ିଶା ମିଲେଟ୍ସ ମିଶନର ଢାଞ୍ଚା ଗ୍ରହଣ କରିବାକୁ ଭାରତ ସରକାର ସମସ୍ତ ରାଜ୍ୟକୁ ପରାମର୍ଶ ଦେଇଛନ୍ତି । ଓଡ଼ିଶା ଏବଂ କର୍ଣ୍ଣାଟକକୁ ନିତି ଆୟୋଗ ଦୁଇଟି ପ୍ରଗତିଶୀଳ ଢାଞ୍ଚା ଭାବରେ ବାଛିଛନ୍ତି । ଛତିଶଗଡ଼ର ରାଜ୍ୟ ଯୋଜନା ଆୟୋଗ ନିଜ ରାଜ୍ୟ ସରକାରଙ୍କୁ ''ଓଡ଼ିଶା ମିଲେଟ୍ସ ମିଶନ'' ଭଳି ଏକ ମିଲେଟ୍ ମିଶନ ଆରମ୍ଭ କରିବାକୁ କହିଛନ୍ତି । ସେହିଭଳି ମହାରାଷ୍ଟ୍ରର ରାଜ୍ୟପାଳ ଓଡ଼ିଶା ମିଲେଟ୍ସ ମିଶନକୁ ବିଚାର କରି ମିଲେଟ୍ ଉପରେ ଏକ ପ୍ରକଳ୍ପ ଆରମ୍ଭ କରିବାକୁ ରାଜ୍ୟ ସରକାରଙ୍କୁ କହିଛନ୍ତି । ଓଡ଼ିଶା ମିଲେଟ୍ସ ମିଶନର ଢାଞ୍ଚାକୁ ଗ୍ରହଣ କରି ଏବଂ ଓଡ଼ିଶା ମିଲେଟ୍ସ ମିଶନ୍ ଶିକ୍ଷା ଉପରେ ଆଧାର କରି ମିଲେଟ୍ ସମ୍ବନ୍ଧୀୟ ଜାତୀୟ

କାର୍ଯ୍ୟକ୍ରମକୁ ସଂଶୋଧନ କରିବା ପାଇଁ ଭାରତ ସରକାର ମଧ୍ୟ ଏକ ଟାସ୍କଫୋର୍ସ ଗଠନ କରିଛନ୍ତି । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ସବୁଜ ବିପ୍ଳବ ଢାଞ୍ଚାର ବିକଳ୍ପ ଭାବରେ ଓଡ଼ିଶା ମିଲେଟ୍ସ ମିଶନକୁ ଡିଜାଇନ୍ କରିବାର ସମ୍ଭାବନାକୁ ଅନୁସନ୍ଧାନ କରିବା ପାଇଁ ଓଡ଼ିଶା ମିଲେଟ୍ସ ମିଶନ୍ ସହିତ ସହଭାଗୀ ହୋଇଥିଲା । ୟୁଏନ୍-ଆଇଫାଡ୍ ଏବଂ ଜାତିସଂଘରେ ଖାଦ୍ୟ ଓ କୃଷି ସଂଗଠନ ପରି ଅନ୍ତର୍ଜାତୀୟ ସଂସ୍ଥାଗୁଡ଼ିକ ଓଡ଼ିଶା ମିଲେଟ୍ସ ମିଶନର ମଡେଲକୁ କୃଷି ପରିବେଶଜନିତ ପଦକ୍ଷେପ ପାଇଁ ଉପଯୁକ୍ତ ବୋଲି ସମର୍ଥନ କରିଛନ୍ତି ।

ଓଡ଼ିଶା ମିଲେଟ୍ସ ମିଶନ୍ ଦର୍ଶାଇଛି ଯେ, ପାରମ୍ପରିକ ପୁଷ୍ଟିକର ଫସଲକୁ ପୁନର୍ଜୀବିତ କରିବାରେ ସରକାରୀ ସହାୟତା ଏବଂ ରଣନୀତି ହସ୍ତକ୍ଷେପ ସହାୟତା କରିଛି । ହଜିଯାଇଥିବା ଶସ୍ୟର ପୁନରୁଦ୍ଧାର, ଆଦିବାସୀ ସମ୍ପ୍ରଦାୟକୁ ସଶକ୍ତିକରଣ, ଧାରଣକ୍ଷମ ଚାଷ ପ୍ରଣାଳୀକୁ ସଂରକ୍ଷଣ କରିବା ଏବଂ ଖାଦ୍ୟ ବ୍ୟବସ୍ଥାରେ ସଂସ୍କାର ଆଣିବା ପାଇଁ ଏହା ଏକ କାହାଣୀ । ଓଡ଼ିଶାର କୃଷି ଏବଂ ଖାଦ୍ୟାଭ୍ୟାସରେ ମିଲେଟ୍ ଏହାର ଉପଯୁକ୍ତ ସ୍ଥାନ ପୁନଃପ୍ରାପ୍ତ ହେବା ସହିତ ବର୍ତ୍ତମାନ ଏହି ସଫଳତାକୁ ଜାତୀୟ ସ୍ତରରେ ଗ୍ରହଣ କରିବାର ଏକ ସୁଯୋଗ ଆସିଛି ।

ନିର୍ଦ୍ଦେଶକ, କୃଷି ଓ ଖାଦ୍ୟ ଉତ୍ପାଦନ
ଓଡ଼ିଶା ସରକାର

❖ ❖ ❖





ନୂଆପଡ଼ା ଜିଲ୍ଲାର ମହିଳା କୃଷକମାନଙ୍କ ଦ୍ୱାରା ମାଣ୍ଡିଆ ଫସଲ ଅମଳ ।




ମହିଳା ସଶକ୍ତିକରଣ ଦିଗରେ ଓଡ଼ିଶା ମିଲେଟ୍ସ ମିଶନ ରାହା ଦେଖାଉଛି : ଭୁବନେଶ୍ୱରରେ ମିଲେଟ୍ ପ୍ରକ୍ରିୟାକରଣ କେନ୍ଦ୍ରରେ ତ୍ରିଶକ୍ତି ମହାସଂଘର ସଭ୍ୟାମାନେ ଉପସ୍ଥିତ।




ଭୁବନେଶ୍ୱର ଜନତା ମଇଦାନରେ 'ଡଟ୍ ଫେଷ୍ଟ' କାର୍ଯ୍ୟକ୍ରମରେ ମିଲେଟ୍‌ଭିତ୍ତିକ ଖାଦ୍ୟ ଷ୍ଟଲ୍ ।




ମିଲେଟ୍ସ ସମ୍ବନ୍ଧରେ ସଚେତନତା ସୃଷ୍ଟି କରୁଛି 'ମାଣ୍ଡିଆ ରଥ' ।




ଗଜପତି ଜିଲ୍ଲା ଆର୍. ଉଦୟଗିରି ବ୍ଲକ୍ ରାମଗିରିରେ କୃଷକମାନେ
'କୃଷି ଯନ୍ତ୍ରପାତି ଭଡ଼ା କେନ୍ଦ୍ର'ରୁ ଯନ୍ତ୍ରପାତି ନେଉଛନ୍ତି ।



ସୁନ୍ଦରଗଡ଼ ଜିଲ୍ଲା ବଡ଼ଗାଁ ବ୍ଲକ୍‌ରେ ଓଡ଼ିଶା ମିଲେଟ୍ସ ମିଶନ ଅଧୀନସ୍ଥ
ଜନବିକାଶ କୃଷକ ଉତ୍ପାଦକ କମ୍ପାନୀ ଦ୍ୱାରା ବିହନ ବଣ୍ଟନ ।



ରାୟଗଡ଼ା ଜିଲ୍ଲା କାଠିପାଡୁ ଗ୍ରାମର ମା' ଦୁର୍ଗା ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟମାନଙ୍କ ଦ୍ୱାରା ଜୈବିକ ଖତ ପ୍ରସ୍ତୁତି ।



ଭୁବନେଶ୍ୱରସ୍ଥିତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହୋଟେଲ ମ୍ୟାନେଜ୍‌ମେଣ୍ଟରେ ସ୍ୱୟଂ ସହାୟକ ଗୋଷ୍ଠୀର ମହିଳାମାନଙ୍କୁ ପୁଷ୍ଟିଶସ୍ୟଭିତ୍ତିକ ଖାଦ୍ୟ ପ୍ରସ୍ତୁତି ପ୍ରଶିକ୍ଷଣ ପ୍ରଦାନ ।



ବରଗଡ଼ ଜିଲ୍ଲା ପଦ୍ମପୁର ବ୍ଲକ୍ ତାଳ ଗ୍ରାମରେ ସୁଆଁ ଫସଲ କ୍ଷେତରେ ଓଡ଼ିଶା ମିଲେଟ୍ସ ମିଶନ ସହାୟତାପ୍ରାପ୍ତ ଜଣେ କୃଷକ ।



ଭୁବନେଶ୍ୱର ପୋଖରୀପୁଟସ୍ଥିତ 'କଳାଭୂମି' ସଂଗ୍ରହାଳୟରେ ଓଡ଼ିଶା ମିଲେଟ୍ସ ମିଶନ ଦ୍ୱାରା ଆୟୋଜିତ 'ମିଲେଟ୍ ଖାଦ୍ୟ ମହୋତ୍ସବ' ।




ଓଡ଼ିଶା ମିଲେଟ୍ସ ମିଶନର ମାସ୍କଟ୍ 'ମିଲି'

# ମହିଳା ଚାଷୀ ସୁବାସା ମାଣ୍ଡିଆ ଚାଷରେ ଭରିଛି ଆଶା

ଐଶ୍ୱର୍ଯ୍ୟା ପରିଜା



କଠିନ ପରିଶ୍ରମ ଓ ଅଦମ୍ୟ ଇଚ୍ଛାଶକ୍ତି ଆଗରେ ହାର୍ ମାନିଥାଏ ସବୁକିଛି । ମହିଳାମାନେ ଏବେ ପ୍ରତ୍ୟେକ କ୍ଷେତ୍ରରେ ସେମାନଙ୍କ ପାରଦର୍ଶିତା ଦେଖାଉଛନ୍ତି । ପୁରୁଷକୈନ୍ଦ୍ରିକ ସମାଜରେ ଜଣେ ମହିଳା ଚାଷ କ୍ଷେତରେ ନିଜର ଅଧ୍ୟବସାୟ ଜାରି ରଖି ପାଲଟିଛନ୍ତି ସଫଳ ଚାଷୀ, ଯିଏ ସମସ୍ତଙ୍କ ପାଇଁ ସାଜିଛନ୍ତି ପ୍ରେରଣାର ଉତ୍ସ । ଜୀବନରେ ଅନେକ ଉତ୍ଥାନ ପତନ ଦେଇ ଗତି କରିବା ପରେ ଏବେ ମାଣ୍ଡିଆ ଚାଷ ତାଙ୍କ ମୁହଁରେ ଫୁଟାଇଛି ହସ । ସୁବାସାଙ୍କ ସଫଳତାର କାହାଣୀ ଯେତିକି ସଂଘର୍ଷମୟ ସେତିକି ରୋମାଞ୍ଚକର । ଏବେ ମହିଳାମାନେ କୌଣସି କ୍ଷେତ୍ରରେ କମ୍ ନୁହଁନ୍ତି ବୋଲି ସେ ପ୍ରମାଣିତ କରିଛନ୍ତି । ନିପଟ ମଫସଲରୁ ଯାଇ ଦିଲ୍ଲୀ, ହାଇଦ୍ରାବାଦ ପରି ସହରରେ ପାରଦର୍ଶିତା ଦେଖାଇପାରିଛନ୍ତି ଏବଂ ରାଜ୍ୟରେ 'ମାଣ୍ଡିଆ ମା' ଭାବେ ଖ୍ୟାତି ଅର୍ଜନ କରିପାରିଛନ୍ତି । ମାଣ୍ଡିଆର ପ୍ରଚାର ପ୍ରସାରରେ ମୁଖ୍ୟ ପୁରୋଧା ସାଜିଛନ୍ତି ।

ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଏହି ଜଣାଶୁଣା ମହିଳା ଚାଷୀ ହେଉଛନ୍ତି ସୁବାସା ମହାନ୍ତ । ବୟସ ପାଖାପାଖି ୫୫ । ଘର ମୟୂରଭଞ୍ଜ ଜିଲ୍ଲା ଯଶିପୁର ବ୍ଲକ୍‌ର ମାଟିଆଗଡ଼ ପଞ୍ଚାୟତର ସିଙ୍ଗାରପୁର ଗାଁରେ । ୨୦୧୭ ମସିହାରୁ ମାଣ୍ଡିଆ ଚାଷ କ୍ଷେତ୍ରରେ ସୁବାସା ନିଜର ଯାତ୍ରା ଆରମ୍ଭ କରିଥିଲେ । ପ୍ରଥମେ ୨୫୦ ଗ୍ରାମ୍ ମାଣ୍ଡିଆ ବିହନ ବୁଣି ଆରମ୍ଭ କରିଥିଲେ ମାଣ୍ଡିଆ ଚାଷ । ରାଜ୍ୟ ସରକାରଙ୍କ ଓଡ଼ିଶା ମିଲେଟ୍ସ ମିଶନ ମାଧ୍ୟମରେ ପୁଷ୍ଟିଶସ୍ୟ ଚାଷରେ ପ୍ରୋତ୍ସାହନ ପାଇ ୨୫୦ ଗ୍ରାମ୍ ମାଣ୍ଡିଆ ବିହନ ବୁଣି ୭ କ୍ୱିଣ୍ଟାଲ ମାଣ୍ଡିଆ ଅମଳ କରିଥିଲେ । ଏହାପରେ ଓଡ଼ିଶା ମିଲେଟ୍ସ ମିଶନ ତରଫରୁ ହୋଇଥିବା ବିଭିନ୍ନ ସଚେତନତା କାର୍ଯ୍ୟକ୍ରମରେ ଯୋଗଦେଇ ମାଣ୍ଡିଆ ଚାଷକୁ ଆଗକୁ ନେଇଚାଲିଛନ୍ତି । ବିଭିନ୍ନ ଆଧୁନିକ ଜ୍ଞାନକୌଶଳକୁ ଆପଣାଇ ପୁଷ୍ଟିଶସ୍ୟ ଚାଷ କ୍ଷେତ୍ରରେ ସେ ସଫଳତା ହାସଲ କରିପାରିଛନ୍ତି । ଏବେ ସୁବାସା ୮ ଏକର ଜମିକୁ ଲିଜ୍‌ରେ ନେଇ ମାଣ୍ଡିଆ ଚାଷ କରୁଛନ୍ତି । ବର୍ତ୍ତମାନ ସେ ଚାଷ ଜମିରେ ୯ ପ୍ରକାରର ମାଣ୍ଡିଆ ଚାଷ କରୁଛନ୍ତି । ସେଗୁଡ଼ିକ ହେଲା- ଭୈରବୀ, ଅରେଙ୍ଗୁ, ଶ୍ରୀକେତନ, ବରଷୀ, ରିତିକା, ଜହ୍ନା, ସାନ ମାଣ୍ଡିଆ, ବଡ଼ମାଣ୍ଡିଆ, ସିମ୍ଭିଡ଼ିପାରିଆ ମାଣ୍ଡିଆ । ଓଡ଼ିଶା ମିଲେଟ୍ସ ମିଶନ ପକ୍ଷରୁ ଦିଆଯାଇଥିବା ପ୍ରଶିକ୍ଷଣରୁ ସେ ଜୈବିକ ଖତ ପ୍ରସ୍ତୁତି, ବିହନ ବୁଣିବା ପ୍ରଣାଳୀ,

ଘାସବଛା କାମ ଆଦି ବିଷୟରେ ଅବଗତ ହୋଇଥିଲେ । ଏହାସହ ସେ ନିଜେ ଚାଷ ପାଇଁ ଯନ୍ତ୍ରପାତି ଚଳାଇବାଠାରୁ ଆରମ୍ଭ କରି ମାଣ୍ଡିଆକୁ ସଫା କରି ଚୂନା ପ୍ରସ୍ତୁତ କରିବା ପର୍ଯ୍ୟନ୍ତ କାର୍ଯ୍ୟ ତୁଲାଉଛନ୍ତି । ସୁବାସା ମାଣ୍ଡିଆ ଚାଷ କରି ଅଧିକ ରୋଜଗାରକ୍ଷମ ହୋଇପାରିଛନ୍ତି । ସେ ନିଜ ଗାଁ ଓ ଆଖପାଖ ଗାଁ'ର ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟାମାନଙ୍କୁ ଓ ଅନ୍ୟ ଚାଷୀମାନଙ୍କୁ ଏହି ଚାଷ ସମ୍ପର୍କରେ ପ୍ରଶିକ୍ଷଣ ମଧ ଦେଉଛନ୍ତି । ଚାଷକ୍ଷେତରେ ପରିଶ୍ରମ କରି ବର୍ଷକୁ ୨୦ କ୍ୱିଣ୍ଟାଲରୁ ଊର୍ଦ୍ଧ୍ୱ ମାଣ୍ଡିଆ ଅମଳ କରୁଛନ୍ତି । ରାଜ୍ୟ ସରକାରଙ୍କ ଦ୍ୱାରା ପରିଚାଳିତ ମଣ୍ଡି ବ୍ୟବସ୍ଥାରେ ୧୫-୨୦ କ୍ୱିଣ୍ଟାଲ ମାଣ୍ଡିଆ ବିକ୍ରି କରିବା ସହ ବ୍ଲକ୍‌ରେ ମଧ ବିକ୍ରି କରୁଛନ୍ତି । ଏହାସହ ମାସକୁ ୩୦-୪୦ହଜାର ଟଙ୍କା ରୋଜଗାର କରି ପରିବାର ପ୍ରତିପୋଷଣ କରୁଛନ୍ତି । ଅଙ୍ଗନୱାଡି କର୍ମୀ ଓ ମା'ମାନଙ୍କୁ ପୁଷ୍ଟିଶସ୍ୟରୁ ପ୍ରସ୍ତୁତ ବିଭିନ୍ନ ଖାଦ୍ୟ ସାମଗ୍ରୀ ସମ୍ପର୍କରେ ପ୍ରଶିକ୍ଷଣ ମଧ ଦେଉଛନ୍ତି । ଯୁବପିଢ଼ିଙ୍କ ମଧ୍ୟରେ ପୁଷ୍ଟିଶସ୍ୟକୁ ନେଇ ସଚେତନତା ସୃଷ୍ଟି କରିବା ପାଇଁ ସେ ପ୍ରୟାସ ଜାରି ରଖିଛନ୍ତି । ଏଥିପାଇଁ ତାଙ୍କୁ 'ସାରଦା ସୀମା ସମ୍ମାନ'ରେ ସମ୍ମାନିତ କରାଯାଇଛି ।

ପରିଶ୍ରମ ଓ ଆତ୍ମବିଶ୍ୱାସ ବଳରେ ମାଣ୍ଡିଆ ଚାଷ କରି ସେ ରାଜ୍ୟ ତଥା ରାଜ୍ୟ ବାହାରେ ବହୁ ପୁରସ୍କାର ଓ ପ୍ରଶଂସା ସାଉଁଟିଛନ୍ତି । ମାର୍ଚ୍ଚ ୨୦୨୩ରେ ନୂଆଦିଲ୍ଲୀରେ ଆୟୋଜିତ ହୋଇଥିବା 'ଗ୍ଲୋବାଲ୍ ମିଲେଟ୍ସ (ଶ୍ରୀ ଅନ୍ନ) କନ୍‌ଫରେନ୍ସରେ ସେ ଅଂଶଗ୍ରହଣ କରି ମାନ୍ୟବର ପ୍ରଧାନମନ୍ତ୍ରୀ ଶ୍ରୀ ନରେନ୍ଦ୍ର ମୋଦିଙ୍କଠାରୁ ପୁରସ୍କାର ଗ୍ରହଣ କରିଛନ୍ତି । ଆହୁରି ମଧ ସେଠାରେ ନିଜସ୍ୱ ଉତ୍ପାଦିତ ବିଭିନ୍ନ ପ୍ରକାରର ପୁଷ୍ଟିଶସ୍ୟ ପ୍ରଦର୍ଶନ କରିଥିଲେ । ଏହାବ୍ୟତୀତ ମାନ୍ୟବର ରାଷ୍ଟ୍ରପତି ଶ୍ରୀମତୀ ଦ୍ରୌପଦୀ ମୁର୍ମୁଙ୍କଠାରୁ ମଧ ସୁବାସା ପୁରସ୍କୃତ ହୋଇଛନ୍ତି ।

ଏ ସମ୍ପର୍କରେ ସୁବାସା କୁହନ୍ତି- '୨୫୦ ଗ୍ରାମ୍ ମାଣ୍ଡିଆ ବିହନ ମୋ ପାଇଁ ଲକ୍ଷ୍ମୀ ସାଜିଲା । ଆଗରୁ ପେଟକୁ ଗଣ୍ଡେ ଭଲରେ ଖାଇବାକୁ ମିଳୁ ନଥିଲା, ହେଲେ ଏବେ ମାଣ୍ଡିଆ ଚାଷ କରି ହସଖୁସିରେ ମୋ ପରିବାର ଚଳୁଛି । କେବଳ ସେତିକି ନୁହେଁ, ରାଜ୍ୟ ସରକାରଙ୍କ ଓଡ଼ିଶା ମିଲେଟ୍ସ ମିଶନ ପକ୍ଷରୁ ମାଣ୍ଡିଆ ଚାଷ ପାଇଁ ମିଳିଥିବା ପ୍ରଶିକ୍ଷଣ ଦ୍ୱାରା ମୁଁ ଆଜି ସଫଳ ଚାଷୀଭାବେ ପରିଚୟ ପାଇଛି । ଏଥିପାଇଁ ରାଜ୍ୟ ତଥା ରାଜ୍ୟ ବାହାରେ ୮ରୁ ଅଧିକ ଥର ସମ୍ମାନିତ ହୋଇପାରିଛି । ନିକଟରେ ନୂଆଦିଲ୍ଲୀରେ ଆୟୋଜିତ ହୋଇଥିବା ଜି-୨୦ ସମ୍ମିଳନୀରେ ଯୋଗଦେଇ ମାଣ୍ଡିଆ ଚାଷ ଉପରେ ନିଜର ଅନୁଭୂତି ବଖାଣିବା ସହ ପୁରସ୍କୃତ ହୋଇଛି ।'

ଓଡ଼ିଶା ମିଲେଟ୍ସ ମିଶନ

❖ ❖ ❖

# ବିବିଧ କିସମ ମାଣ୍ଡିଆ ଚାଷ ସୁଖଦେବ ପାଇଁ ଆଣିଛି ହସ

ଅଭିଜିତ୍ ମହାନ୍ତି



କଥାରେ ଅଛି ଯେ, ଦୃଢ଼ ଇଚ୍ଛାଶକ୍ତି ଆଗରେ ସବୁ ସମସ୍ୟା ହାର୍ ମାନିଥାଏ । ମନରେ କିଛି କରିବାର ଇଚ୍ଛା ଏବଂ ଆତ୍ମବିଶ୍ୱାସ ହିଁ ପ୍ରତ୍ୟେକ କାମକୁ ସଫଳ କରିବାରେ ସାହାଯ୍ୟ କରେ । ଚାଷ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରାଇପାରିଥିବା ଏପରି ଜଣେ ସଫଳ ଚାଷୀ ହେଉଛନ୍ତି ସୁଖଦେବ ସିଲପାଡ଼ିଆ । ଯିଏ କୋରାପୁଟ ଜିଲ୍ଲାର ନିପଟ ମଫସଲ ପାଲିଗୁଡ଼ା ଗ୍ରାମରେ ନିଜ ଜମିରେ ମାଣ୍ଡିଆ ଚାଷ କରି ଅନେକ ଚାଷୀମାନଙ୍କ ପାଇଁ ପାଲଟିଛନ୍ତି ଏକ ଅନନ୍ୟ ଉଦାହରଣ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଆଧୁନିକ ଜ୍ଞାନକୌଶଳକୁ ଆପଣେଇ ୨୧ ପ୍ରକାରର ମାଣ୍ଡିଆ ଚାଷ କରି ସୃଷ୍ଟି କରିଛନ୍ତି ଏକ ନୂଆ ପରିଚୟ ।

ସୁଖଦେବଙ୍କ କାହାଣୀ ଯେତିକି ସଂଘର୍ଷମୟ ସେତିକି ହୃଦୟସ୍ପର୍ଶୀ ମଧ୍ୟ । ଜୀବନର ଜଞ୍ଜାଳକୁ ବୋଝ ନ ଭାବି ନିଜକୁ ଏକ ଆତ୍ମନିର୍ଭରଶୀଳ ଭାବେ ଗଢି ତୋଳିଛନ୍ତି ସେ । ପରିବାରର ବୋଝ ହେଉ ଅବା ଆର୍ଥିକ ଅନଟନ, ସବୁ ସମସ୍ୟା ତାଙ୍କ ଆଗରେ ବାଧକ ସାଜିବାରେ ବିଫଳ ହୋଇଛି । ଅଭାବ ଅସୁବିଧା ଘେରରେ ଥାଇ ମଧ୍ୟ ନିଜ ପଲ୍ଲୀରୁ ବାହାରି ଦିଲ୍ଲୀ ପର୍ଯ୍ୟନ୍ତ ଯାତ୍ରା ତାଙ୍କ ପାଇଁ ଏକ ପରିବର୍ତ୍ତନର ଧାରା ସୃଷ୍ଟି କରିପାରିଛି । ଯାହାଦ୍ୱାରା ସେ କୋରାପୁଟ ଜିଲ୍ଲାର ଜଣେ ବେଶ୍ ଜଣାଶୁଣା ସଫଳ ମାଣ୍ଡିଆ ଚାଷୀ ଭାବେ ଖ୍ୟାତିଲାଭ କରିପାରିଛନ୍ତି ।

୨୦୧୮ ମସିହାରେ ଓଡ଼ିଶା ମିଲେଟ୍ସ ମିଶନ ତରଫରୁ ଆୟୋଜିତ ହୋଇଥିବା ପୁଷ୍ଟିଶସ୍ୟଭିତ୍ତିକ ସଚେତନତା କାର୍ଯ୍ୟକ୍ରମରେ ଯୋଗଦେଇ ସେ ମାଣ୍ଡିଆ, ସୁଆଁ, କୋଦ ଆଦି ଚାଷ କରିବାର ସଠିକ୍ ଜ୍ଞାନକୌଶଳ ବିଷୟରେ ଜାଣିବାକୁ ପାଇଥିଲେ । ସେ ପୂର୍ବରୁ ଅଳ୍ପ କିଛି ମାଣ୍ଡିଆ ଚାଷ କରୁଥିଲେ ମଧ୍ୟ ସେତେମାତ୍ରାରେ ଲାଭପ୍ରଦ ହୋଇପାରୁନଥିଲେ । ନା ଥିଲା ମଣ୍ଡିର ବ୍ୟବସ୍ଥା, ନା ମିଳୁଥିଲା ଆର୍ଥିକ ପ୍ରୋତ୍ସାହନ । ପରିଶ୍ରମ କରି ମଧ୍ୟ ତାଙ୍କୁ ମିଳିପାରୁନଥିଲା ଉଚିତ ପାରିଶ୍ରମିକ । ଓଡ଼ିଶା ମିଲେଟ୍ସ ମିଶନ ତରଫରୁ ପୁଷ୍ଟିଶସ୍ୟ ଚାଷ ଏବଂ ଏହାର ଉପକାରିତା ସମ୍ପର୍କରେ ଜାଣିବାକୁ ପାଇବା ପରେ ସେ ସଠିକ୍ ପଦ୍ଧତିରେ ମାଣ୍ଡିଆ ଚାଷ କରିବା ଆରମ୍ଭ କଲେ ।

ପ୍ରଥମେ ସେ ଅଧା ଏକର ଜମିରେ ୨୧ ପ୍ରକାରର ମାଣ୍ଡିଆ ଚାଷ କଲେ । ଯେଉଁଥିରେ ଧଳା, ମାମି, ମାଟି, କଳା କେରେଙ୍ଗା, ରିକ୍ସା, ଗୁଡେଲ, ଚିଲିକା, ବଡ଼, ଲଡ୍ଡୁ, କାଦୁଅ, କଳା, ଦଶରା, ବଡ଼ ମାଟି, ଗୁରୁଞ୍ଜୁ, ରିଙ୍କା, କେରେଙ୍ଗା, ଜହ୍ନା, ଭୈରବୀ, କଳା, ଚିଲ୍ଲି ଓ ରାଇ ମାଣ୍ଡିଆ ଆଦି ଚାଷ କରିଥିଲେ । ଓଡ଼ିଶା ମିଲେଟ୍ସ ମିଶନ ତରଫରୁ ପୁଷ୍ଟିଶସ୍ୟକୁ ନେଇ ଦିଆଯାଇଥିବା ଉଚିତ ଚାଷ ପ୍ରଣାଳୀ ପ୍ରଶିକ୍ଷଣ କାର୍ଯ୍ୟକ୍ରମରୁ ତାଲିମ ପାଇ ସେ ଚାଷ କରିବା ଜାରି ରଖିଲେ । ଏହା ବ୍ୟତୀତ ସେ ଜୈବିକ ଖତ, ବିହନ ବୁଣିବାର ଉଚିତ ପ୍ରଣାଳୀ, ଘାସ ବାଛିବା ପଦ୍ଧତି ଆଦି ବିଷୟରେ ମଧ୍ୟ ଅବଗତ ହୋଇଥିଲେ । ଯାହା ଫଳରେ ପୂର୍ବ ଅପେକ୍ଷା ସେ ଚାଷ କ୍ଷେତ୍ରରେ ଅଧିକ ଲାଭବାନ ହୋଇପାରିଲେ । ତାଙ୍କ ଚାଷ କରିବାର ଶୈଳୀ ବିଷୟରେ ଗାଁ ଏବଂ ଗାଁ ଆଖପାଖ ଲୋକେ ଜାଣି ମାଣ୍ଡିଆ ଚାଷ କରିବା ଆରମ୍ଭ କଲେ । ଯାହାଦ୍ୱାରା ଗାଁରେ ଧୀରେ ଧୀରେ ମାଣ୍ଡିଆ ଚାଷର ଚାହିଦା ବଢ଼ିବାକୁ ଲାଗିଲା ।

ଏହାସହ ରାଜ୍ୟ ସରକାରଙ୍କ ଦ୍ୱାରା ପରିଚାଳିତ ହେଉଥିବା ମାଣ୍ଡିଆ ମଣ୍ଡିରେ ମାଣ୍ଡିଆ ବିକ୍ରି କରି ସେ ଉଚିତ ମୂଲ୍ୟ ପାଇବା ସହ ନିଜ ଗାଁ'ର ଅନେକ ଚାଷୀଙ୍କୁ ମାଣ୍ଡିଆ ଚାଷ ଏବଂ ଏହାର ବିକ୍ରି ପାଇଁ ଉତ୍ସାହିତ କରିପାରିଛନ୍ତି । ଏନେଇ ଦୃଢ଼ ମନୋବଳ ସହ ଆଗେଇ ଚାଲିଥିବା ସୁଖଦେବ କେବଳ ନିଜ ଗାଁ'ରେ ନୁହେଁ ବରଂ ରାଜଧାନୀ ଦିଲ୍ଲୀରେ ମଧ୍ୟ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ଦିଲ୍ଲୀର ଏନ୍ଏଏସସି କମ୍ପ୍ଲେକ୍ସରେ ଆୟୋଜିତ ହୋଇଥିବା 'ମିଲେଟ୍ସ ଫର୍ ମିଲିୟନ୍ସ' ରେ ଯୋଗ ଦେଇ ସେ ସଫଳ ମାଣ୍ଡିଆ ଚାଷୀ ଭାବେ ପୁରସ୍କୃତ ହୋଇଛନ୍ତି । ୨୧ ପ୍ରକାରର ମାଣ୍ଡିଆ ଚାଷ କରି ନିଜ ପରିଶ୍ରମ ଓ ଅଧ୍ୟବସାୟ ଦ୍ୱାରା ଲୋକପ୍ରିୟତା ହାସଲ କରିଛନ୍ତି ।

ଏହି ସମ୍ପର୍କରେ ସୁଖଦେବ କୁହନ୍ତି ଯେ ''ଜୀବନରେ ଅନେକ ପ୍ରତିବନ୍ଧକ ସୃଷ୍ଟି ହୋଇଛି । କିନ୍ତୁ ସେ ସବୁକୁ ଖାତିର ନ କରି ନିଜକୁ ଜଣେ ଦକ୍ଷ ଚାଷୀ ଭାବେ ମୁଁ ଗଢି ପାରିଛି । ଓଡ଼ିଶା ମିଲେଟ୍ସ ମିଶନ ତରଫରୁ ଦିଆଯାଇଥିବା ତାଲିମ ପରେ ମୁଁ ମାଣ୍ଡିଆ ଚାଷ କରିବାର ସଠିକ୍ ପ୍ରଣାଳୀ ଜାଣିବାକୁ ପାଇ ଚାଷ ଆରମ୍ଭ କରିଥିଲି । ଉତ୍ପାଦିତ ମାଣ୍ଡିଆକୁ ମଣ୍ଡିରେ ବିକ୍ରି କରି ଉଚିତ ମୂଲ୍ୟ ପାଇପାରୁଛି । ଯାହାଦ୍ୱାରା ମୋର ଏବେ ଆର୍ଥିକ ସ୍ଥିତିରେ ସୁଧାର ଆସିବା ସହ ମୁଁ ଏଥିପାଇଁ ରାଜ୍ୟ ଓ ରାଜ୍ୟ ବାହାରେ ପ୍ରଶଂସିତ ହୋଇପାରିଛି । ଦିଲ୍ଲୀ, କଲିକତା, ମୁମ୍ବାଇ ଭଳି ଅନେକ ସ୍ଥାନରେ ସମ୍ମାନିତ ହୋଇଛି ।'' ଏହା କେବଳ ଓଡ଼ିଶା ମିଲେଟ୍ସ ମିଶନ ପାଇଁ ସମ୍ଭବ ହୋଇଛି ବୋଲି ସୁଖଦେବ କହିଛନ୍ତି ।

ଓଡ଼ିଶା ମିଲେଟ୍ସ ମିଶନ ଯୋଗୁଁ କେବଳ ସୁଖଦେବ ନୁହନ୍ତି ବରଂ ତାଙ୍କ ଭଳି ଅନେକ ଚାଷୀ ବର୍ତ୍ତମାନ ମାଣ୍ଡିଆ ଚାଷ ଦ୍ୱାରା ଉପକୃତ ହେଉଛନ୍ତି । ମାଣ୍ଡିଆ ଚାଷ କରିବାଠାରୁ ଆରମ୍ଭ କରି ମଣ୍ଡିରେ ବିକ୍ରି କରିବା ଏବଂ ଉଚିତ ମୂଲ୍ୟ ପାଇବା ପର୍ଯ୍ୟନ୍ତ ଯାତ୍ରାରେ ଓଡ଼ିଶା ମିଲେଟ୍ସ ମିଶନ ଚାଷୀଙ୍କୁ ପ୍ରୋତ୍ସାହିତ କରୁଛି । ଯାହାଦ୍ୱାରା ଚାଷୀମାନେ ଅଧିକ ଲାଭବାନ ହୋଇପାରୁଛନ୍ତି ।

ଓଡ଼ିଶା ମିଲେଟ୍ସ ମିଶନ

❖ ❖ ❖

# ମାଣ୍ଡିଆ ପାହାଡ଼

**ଶୁଭଶ୍ରୀ ପରିଡ଼ା**



ଓଡ଼ିଶାର ସଂସ୍କୃତି, ପରମ୍ପରା, ଚାଲିଚଳଣି ମଧ୍ୟରେ ଓଡ଼ିଆଙ୍କ ଖାଦ୍ୟପେୟ ବେଶ୍ ନିଆରା । ସେ ପଖାଳ ହେଉ ଅବା ପୋଡ଼ପିଠା, ସେ ମାଛ ବେସର ହେଉ ଅବା ଶାଗ ଭଜା, ଏସବୁ ପରଷା ଗଲେ ଆମ ଓଡ଼ିଆଙ୍କୁ ଆଗ ଖୋଜାପଡେ । ଏହାରି ମଧ୍ୟରେ ଲୁଚି ରହିଛି ଆମ ପାରମ୍ପରିକ ମାଣ୍ଡିଆ । ଯାହାକୁ ବହୁ ପୂର୍ବରୁ ଆମ ବାପା, ଜେଜେ ବାପାମାନେ ଚାଷ କରୁଥିଲେ । ଆଉ ମାଣ୍ଡିଆ ଜାଉ ପେଟ ପୂରା ଖାଉଥିଲେ । ସେଥିପାଇଁ ତ କଥାରେ ଅଛି, ଯାହା ଘରେ ମାଣ୍ଡିଆ ନାହିଁ, ତା' ଘରେ ଅଡ଼ିଆ ନାହିଁ । ଘରେ ମାଣ୍ଡିଆ ନଥିଲେ ଘରେ ଖାଦ୍ୟ ନାହିଁ ବୋଲି କୁହାଯାଉଥିଲା ।

ପର୍ବପର୍ବାଣିଠାରୁ ଆରମ୍ଭ କରି ଯାନିଯାତ୍ରା, ସବୁଠି ମାଣ୍ଡିଆର ଭାରି ଆଦର । ଯାହା ପାଟିକୁ ସୁଆଦ, ପେଟକୁ ଥଣ୍ଡା । ଯେତେବେଳେ ବାପା, ଅଜାମାନେ କ୍ଷେତକୁ ଚାଷ କରିବା ପାଇଁ ଯାଉଥିଲେ, ସେତେବେଳେ ବୋଉ କଂସାରେ କଂସେ ମାଣ୍ଡିଆ ଜାଉ ବାନ୍ଧିଦିଏ । ବାସ୍ ସେତିକିରେ ଥାଏ ସବୁ ସୁଆଦ । କେବଳ ଏତିକି ନୁହେଁ, ସବୁବେଳେ ପେଟ ଥଣ୍ଡା ରହିବା ସହ ରୋଗବ୍ୟାଧି ପାଖ ମାଡେ ନାହିଁ ।

ପାରମ୍ପରିକ ଶସ୍ୟ ମଧ୍ୟରୁ ମାଣ୍ଡିଆ ସର୍ବଦା ସର୍ବୋତ୍ତମ । ପୂର୍ବରୁ ଧାନ, କପା ଚାଷ ତ ହେଉଥିଲା କିନ୍ତୁ ମାଣ୍ଡିଆ ବିଶେଷକରି ଆମ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ମୁଖ୍ୟ ଖାଦ୍ୟ ଭାବେ ବିବେଚିତ ହେଉଥିଲା । ଏଥିରେ ଭରି ରହିଥିବା ପୋଷଣ ଓ ଖାଦ୍ୟସାର ଶରୀରକୁ ସୁସ୍ଥ ରଖେ, ବିଭିନ୍ନ ରୋଗକୁ ପ୍ରତିରୋଧ କରେ ଏବଂ ଶରୀର ପାଇଁ ଏକ ସଂଜୀବନୀ ସଦୃଶ କାମ କରେ । ଏହି ପାରମ୍ପରିକ ମାଣ୍ଡିଆ ଧୀରେ ଧୀରେ ଧାନ ଚାଷ ଆଳରେ ଲୁଚିବାକୁ ଲାଗିଥିଲା । ନା ଚାଷ କ୍ଷେତରେ ଦେଖାଗଲା, ନା ଖାଦ୍ୟ ଥାଳିରେ ପରଷାଗଲା । ତେଣୁ ଆଜି ବି ଅନେକଙ୍କ ପାଇଁ ମାଣ୍ଡିଆ ନୂଆ ଶସ୍ୟପରି ମନେ ହୁଏ ।

ଏହାକୁ ଦୃଷ୍ଟିରେ ରଖି ଓଡ଼ିଶା ସରକାରଙ୍କ ତରଫରୁ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ପୁଷ୍ଟିଶସ୍ୟର ପ୍ରଚାର ପ୍ରସାର ପାଇଁ ୨୦୧୭ ମସିହାରେ 'ଓଡ଼ିଶା ମିଲେଟ୍ସ ମିଶନ' ଗଠନ କରାଗଲା । ପୁଷ୍ଟିଶସ୍ୟକୁ ପୁନର୍ବାର ଖାଦ୍ୟଥାଳିକୁ ଫେରେଇ

ଆଣିବା ପାଇଁ ଏହା ଏକ ଭିନ୍ନ ପ୍ରୟାସ ସାଜିଲା । ପ୍ରଥମେ ଏହା ୧୯ଟି ଜିଲ୍ଲାର ୧୪୩ଟି ବ୍ଲକ୍‌ରେ କାର୍ଯ୍ୟ କରୁଥିଲା । କିନ୍ତୁ ବର୍ତ୍ତମାନ ଏହା ୩୦ଟି ଜିଲ୍ଲାର ୧୭୭ଟି ବ୍ଲକ୍‌ରେ କାର୍ଯ୍ୟ କରୁଛି । ଯାହାଦ୍ୱାରା ଚାଷୀ ଓ ମହିଳା ଉଭୟଙ୍କ ପାଇଁ ନୂତନ ସୁଯୋଗ ସୃଷ୍ଟି କରିଛି । ୩୦ଟି ଜିଲ୍ଲାରେ ମାଣ୍ଡିଆର ଉଚିତ ପଦ୍ଧତିରେ ଚାଷ, ଚାଷୀମାନଙ୍କୁ ସହାୟତା ରାଶି, ମଣ୍ଡି ବ୍ୟବସ୍ଥା ଆଦି ଯୋଗାଇ ଦିଆଯାଉଛି ଏବଂ ସମସ୍ତଙ୍କ ମଧ୍ୟରେ ପୁଷ୍ଟିଶସ୍ୟର ସଚେତନତା ସୃଷ୍ଟି କରେଇବା ପାଇଁ ବିଭିନ୍ନ ସଚେତନତାମୂଳକ କାର୍ଯ୍ୟକ୍ରମ ମଧ୍ୟ କରାଯାଉଛି ।

ଏହାରି ମଧ୍ୟରେ କଳାହାଣ୍ଡି ଜିଲ୍ଲା ସୃଷ୍ଟି କରିଛି ଏକ ଅନନ୍ୟ ଉଦାହରଣ । ଦିନେ ଭୋକର ଭୂଗୋଳ ଭାବେ ପରିଚିତ ଥିବା କଳାହାଣ୍ଡି ଜିଲ୍ଲା ଆଜି ପୁଣି ପାରମ୍ପରିକ ପୁଷ୍ଟିଶସ୍ୟକୁ ପୁନଃଜୀବିତ କରିବାର ମୁଖ୍ୟସ୍ରୋତରେ ସାମିଲ ହୋଇଛି । ଯେଉଁଠି ଚାଷ କ୍ଷେତ ବ୍ୟତୀତ ପାହାଡ଼ର ପାଦଦେଶରୁ ନେଇ ଶୀର୍ଷ ପର୍ଯ୍ୟନ୍ତ ଦେଖିବାକୁ ମିଳୁଛି ମାଣ୍ଡିଆର କ୍ଷେତ । କଳାହାଣ୍ଡି ଜିଲ୍ଲାରେ ଓଡ଼ିଶା ମିଲେଟ୍ସ ମିଶନ ତରଫରୁ ଚାଷୀମାନଙ୍କ ପାଇଁ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଆୟୋଜିତ କରାଯାଇ ସେମାନଙ୍କୁ ପୁଷ୍ଟିଶସ୍ୟ ଚାଷର ଉପାଦେୟତା ବିଷୟରେ କୁହାଯାଇଥିଲା । ପରବର୍ତ୍ତୀ ସମୟରେ ଚାଷୀମାନେ ପୁନର୍ବାର ମାଣ୍ଡିଆ ଚାଷକୁ ଆପଣେଇଲେ ।

ପ୍ରଥମେ ଚାଷୀମାନେ ପାହାଡ଼ରେ ଅଳସି ଏବଂ ତୈଳବୀଜ ଜାତୀୟ ଫସଲ କରୁଥିଲେ । ଏଥିପାଇଁ ବିକ୍ରିବଟାରେ ଅନେକ ସମସ୍ୟା ଉପୁଜୁଥିଲା । ପରବର୍ତ୍ତୀ ସମୟରେ ଓଡ଼ିଶା ମିଲେଟ୍ସ ମିଶନ ତରଫରୁ ପ୍ରଶିକ୍ଷଣ ପାଇ ଚାଷୀମାନେ ୨୦୧୯-୨୦ରେ ମାଣ୍ଡିଆ ଚାଷ କରିବା ଆରମ୍ଭ କଲେ । ମାଣ୍ଡିଆ ଚାଷର ସୁବ୍ୟବସ୍ଥା ଯୋଗୁଁ ଆରମ୍ଭରେ ଖୁବ୍ କମ୍ ସଂଖ୍ୟକ  ଚାଷୀ ଏହି ଚାଷ କରୁଥିଲେ । ମାତ୍ର ୨୦୨୩-୨୪ ବର୍ଷରେ ପ୍ରାୟ ଏହା ଏକ ହଜାର ଏକର ଜମିକୁ ବୃଦ୍ଧି ପାଇଛି । ଯାହାଦ୍ୱାରା ଚାଷୀମାନେ ବେଶ୍ ଲାଭ ପାଇପାରୁଛନ୍ତି ।

ଆଜି କଳାହାଣ୍ଡିର ସେହି ପାହାଡ଼ରେ ଧୀର ପବନରେ ମାଣ୍ଡିଆ କ୍ଷେତ ଲହରୀ ଭାଙ୍ଗୁଛି । ସବୁଜିମାରେ ଭରପୂର ମାଣ୍ଡିଆ ପାହାଡ଼ ଯେପରି ପୋଷଣରେ ଭରପୂର ଖାଦ୍ୟର ଭଣ୍ଡାରକୁ ସାଇତି ରଖିଛି । କେବଳ ମାଣ୍ଡିଆ ନୁହେଁ ବରଂ କୋଦ, କାଙ୍ଗୁ, ସୁଆଁ ଆଦି ଅନେକ କିଛି । ପାହାଡ଼ର ଗଡ଼ାଣିଆ ଭାଗ ଯେପରି ଶ୍ରୀ ଅନ୍ନ ଶବ୍ଦର ଶୋଭାକୁ ଦ୍ୱିଗୁଣିତ କରୁଛି ।

ଓଡ଼ିଶା ମିଲେଟ୍ସ ମିଶନ

❖ ❖ ❖



# ବିଶ୍ୱ ଦରବାରରେ 'ଶକ୍ତିମୟୀ ମହାସଂଘ'

ଶୁଭଶ୍ରୀ ପରିଡ଼ା
ଐଶ୍ୱର୍ଯ୍ୟା ପରିଜା



ଦୃଢ ଇଚ୍ଛାଶକ୍ତି ଓ ପରିଶ୍ରମ ହେଉଛି ସଫଳତାର ମାପକାଠି । ଏହାକୁ ବାସ୍ତବରେ ପରିଣତ କରିପାରିଛନ୍ତି ସ୍ୱୟଂ ସହାୟକ ଗୋଷ୍ଠୀର ମହିଳାମାନେ । ଓଡ଼ିଶାର ପୁଷ୍ଟିଶସ୍ୟକୁ ନେଇ ଦେଶ ବିଦେଶରେ ପହଞ୍ଚାଇବାରେ ଏଭଳି ଏକ ସଫଳ ଗୋଷ୍ଠୀ ହେଲେ ଭୁବନେଶ୍ୱର ରେଣ୍ଟାଲ୍ କଲୋନୀସ୍ଥିତ 'ଶକ୍ତିମୟୀ ମହାସଂଘ' । ୫୦ଟଙ୍କାର ଜମା ରାଶିରୁ ଆରମ୍ଭ କରିଥିବା ମା'ମାନେ ଆଜି ମାସକୁ ସାଢେ ୩ଲକ୍ଷ ଟଙ୍କା ରୋଜଗାର କରିପାରିଛନ୍ତି । ଦିନ ଥିଲା ସେମାନଙ୍କ ଦ୍ୱାରା ପ୍ରସ୍ତୁତ ସାମଗ୍ରୀ ସ୍ଥାନୀୟ ଲୋକଙ୍କ ବିଶ୍ୱାସଭାଜନ ହୋଇପାରୁ ନ ଥିଲା । ମାତ୍ର ବର୍ତ୍ତମାନ ବିଶ୍ୱ ବଜାରରେ ଏହାର ଚାହିଦା ବଢିଛି । ପ୍ୟାରିସ୍, ଦୁବାଇ ଭଳି ସହରରେ ଏବେ ଭୁବନେଶ୍ୱରର ସ୍ୱୟଂ ସହାୟକ ଗୋଷ୍ଠୀର ମା'ମାନଙ୍କ ଦ୍ୱାରା ପ୍ରସ୍ତୁତ ଖାଦ୍ୟ ସାମଗ୍ରୀର ବିକ୍ରିବଟା ହୋଇପାରୁଛି । ଏହାସହିତ ମା'ମାନେ ସ୍ୱାବଲମ୍ବୀ ହେବା ସହ ରୋଜଗାରକ୍ଷମ ହୋଇପାରିଛନ୍ତି । କେବଳ ସ୍ୱାବଲମ୍ବୀ ନୁହେଁ, ପ୍ୟାରିସ୍‌ରେ ଓଡ଼ିଶାର ମାଣ୍ଡିଆରୁ ପ୍ରସ୍ତୁତ ଖାଦ୍ୟକୁ ପ୍ରଦର୍ଶନ କରି ପ୍ରଶଂସା ସାଉଁଟି ପାରିଛନ୍ତି । ଘରର ଚାରିକୋଣରୁ ବାହାରି ସେମାନେ ସ୍ୱାବଲମ୍ବନର ରାହା ପାଇପାରିଛନ୍ତି । ଏଥିପାଇଁ ମିଶନ୍ ଶକ୍ତି ଓ ଓଡ଼ିଶା ମିଲେଟ୍ସ ମିଶନ ସେମାନଙ୍କୁ ସହାୟତାର ହାତ ବଢାଇଛି । ୨୦୦୨ମସିହାରୁ ଭୁବନେଶ୍ୱରର ରେଣ୍ଟାଲ୍ କଲୋନୀର ୧୦ଜଣ ଆର୍ଥିକ ଅନଗ୍ରସର ମହିଳାଙ୍କୁ ନେଇ ଆରମ୍ଭ ହୋଇଥିଲା 'ସଞ୍ଜୀବନୀ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ' । ପରବର୍ତ୍ତୀ ସମୟରେ ୨୦୦୮ ମସିହାରୁ ୨୦ଟି ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ନେଇ ଆରମ୍ଭ ହୋଇଥିଲା 'ଶକ୍ତିମୟୀ ମହାସଂଘ' । ପ୍ରଥମେ ୧୦ଟଙ୍କା ଓ ୫୦ଟଙ୍କା ସଞ୍ଚୟରୁ ଆରମ୍ଭ କରିଥିବା ଏହି ଗୋଷ୍ଠୀର ମହିଳାମାନେ ବଡ଼ି, ପାମ୍ପଡ଼, ଆରିଶାରୁ ବ୍ୟବସାୟ ଆରମ୍ଭ କରିଥିଲେ । ଏହି ସ୍ୱୟଂ ସହାୟକ ଗୋଷ୍ଠୀ ଏବେ ମହିଳା ଶକ୍ତିରେ ପରିଣତ ହୋଇଛି ।

୨୦୧୯ ମସିହାରୁ ରାଜ୍ୟ ସରକାରଙ୍କ ଓଡ଼ିଶା ମିଲେଟ୍ସ ମିଶନ ଅଧୀନରେ ମିଲେଟ୍ ବା ପୁଷ୍ଟିଶସ୍ୟରୁ ପ୍ରସ୍ତୁତ ଖାଦ୍ୟ ସାମଗ୍ରୀ ପହଞ୍ଚାଉଛନ୍ତି ଏହି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ । ରାଜ୍ୟର ପ୍ରଥମ ମିଲେଟ୍ ଶକ୍ତି ଆଉଟ୍‌ଲେଟ୍ ଭାବେ ୨୦୨୧ ମସିହାରୁ କୃଷି ଭବନରେ ଆରମ୍ଭ ହୋଇଥିବା ଏହି ଆଉଟ୍‌ଲେଟ୍‌ର ଦାୟିତ୍ୱ ତୁଲାଉଛନ୍ତି । ପୁଷ୍ଟିଶସ୍ୟରୁ ପ୍ରସ୍ତୁତ ଖାଦ୍ୟ ପ୍ରତି ଲୋକଙ୍କୁ ଆକୃଷ୍ଟ କରିବା ସହ ବିଭିନ୍ନ ପ୍ରକାରର ନୂଆ ଖାଦ୍ୟ ପ୍ରସ୍ତୁତ କରି ଯୋଗାଉଛନ୍ତି । ମାଣ୍ଡିଆରୁ ପ୍ରସ୍ତୁତ

ବିସ୍କୁଟ, ଲଡ୍ଡୁ, ମିକ୍ସଚର, ନିମିକି, କେକ୍ ଆଦି ବିଭିନ୍ନ ଖାଦ୍ୟ ସାମଗ୍ରୀ ବିକ୍ରି କରୁଛନ୍ତି । ମାଣ୍ଡିଆରୁ ପ୍ରସ୍ତୁତ ମଣ୍ଡା ପିଠା, ମଫିନ୍, ବାଦାମ୍ ପକୋଡ଼ା, ଏଣ୍ଡୁରି ପିଠା, ପୋଡ଼ପିଠା, ଖିରା, ପକୋଡ଼ି ଆଦି ୪୦ରୁ ଊର୍ଦ୍ଧ୍ୱ ପ୍ରକାରର ଖାଦ୍ୟ ସାମଗ୍ରୀ ବିକ୍ରି କରୁଛନ୍ତି । ଏହା ସହିତ ମାଣ୍ଡିଆ, ବାଜରା, କାଙ୍ଗୁ, କୋଦ, ସୁଆଁ, ଜହ୍ନା ଭଳି ୮ ପ୍ରକାରର ମିଲେଟ୍‌ରୁ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରୁଛନ୍ତି । ଏଥିପାଇଁ ଦିନକୁ ୧୦-୧୨ହଜାର ଟଙ୍କା ରୋଜଗାର କରୁଛନ୍ତି । ଏଥିପାଇଁ ସେମାନଙ୍କୁ ଓଡ଼ିଶା ମିଲେଟ୍ସ ମିଶନ ପକ୍ଷରୁ ସମସ୍ତ ସହାୟତା ଯୋଗାଇ ଦିଆଯାଇଛି । ପୁଷ୍ଟିଶସ୍ୟରୁ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତି ପାଇଁ ମହିଳାମାନଙ୍କୁ ପ୍ରଶିକ୍ଷଣ ମଧ୍ୟ ଦିଆଯାଇଥିଲା । ମହିଳାମାନଙ୍କୁ ସ୍ୱାବଲମ୍ବୀ କରିବା ସହ ଆର୍ଥିକ କ୍ଷେତ୍ରରେ ସ୍ୱଚ୍ଛଳ କରିବା ପାଇଁ ଏଥିରେ ସାମିଲ କରାଯାଇଥିଲା । ଏହି ମହିଳାମାନେ ମିଶନ ଶକ୍ତି ଓ ଓଡ଼ିଶା ମିଲେଟ୍ସ ମିଶନ ମାଧ୍ୟମରେ ଫ୍ରାନ୍ସର ପ୍ୟାରିସ୍‌ରେ ଆୟୋଜିତ ବିଶାଳ ଅନ୍ତର୍ଜାତୀୟ ଖାଦ୍ୟ ଉତ୍ପାଦନ ପ୍ରଦର୍ଶନୀ 'ସିଆଲ୍ ୨୦୨୨'ରେ ଓଡ଼ିଶାର ମିଲେଟ୍ ଫୁଡ୍‌କୁ ପ୍ରଦର୍ଶିତ କରିବା ସହ ବିଦେଶରେ ପ୍ରଶଂସା ସାଉଁଟିଥିଲେ । ସ୍ଥାନୀୟ ବଜାରରେ କେବଳ ବିକ୍ରି କରି ରୋଜଗାର କରୁଥିବା ମହିଳାମାନେ ସଫଳତାର ଶୀର୍ଷରେ ପହଞ୍ଚିପାରିଛନ୍ତି । ଏହାସହିତ ମିଲେଟ୍‌ର ପ୍ରଚାର ପ୍ରସାର ପାଇଁ କାର୍ଯ୍ୟ କରୁଥିବାରୁ ହାଇଦ୍ରାବାଦରେ 'ପୋଷକ ଅନାଜ ପୁରସ୍କାର-୨୦୨୨' ହାସଲ କରିଛନ୍ତି । ଏହାବ୍ୟତୀତ ମା'ମାନେ ଏକ୍ସପୋର୍ଟ ଲାଇସେନ୍ସ ପାଇ ଦୁବାଇ, ଦିଲ୍ଲୀ, ହାଇଦ୍ରାବାଦ ଆଦିକୁ ମାଣ୍ଡିଆଜାତ ସାମଗ୍ରୀ ପଠାଉଛନ୍ତି । ଏଥିପାଇଁ ମା'ମାନେ ମାସକୁ ୩ଲକ୍ଷରୁ ସାଢେ ୩ଲକ୍ଷ ଟଙ୍କା ରୋଜଗାର କରିପାରୁଛନ୍ତି । ଏ ସମ୍ପର୍କରେ ମହାସଂଘର ସମ୍ପାଦିକା ପଦ୍ମାଳୟା ମହାନ୍ତି କହିଛନ୍ତି, ମିଶନ ଶକ୍ତି ଓ ଓଡ଼ିଶା ମିଲେଟ୍ସ ମିଶନ ମାଧ୍ୟମରେ ମା'ମାନେ ଆଜି ବିଦେଶରେ ପାରଦର୍ଶିତା ଲାଭ କରିଛନ୍ତି । ଓଡ଼ିଶା ମିଲେଟ୍ସ ମିଶନ ପକ୍ଷରୁ 'ମିଲେଟ୍ ଶକ୍ତି ଆଉଟ୍‌ଲେଟ୍'ର ଦାୟିତ୍ୱ ଦିଆଯିବା ପରେ 'ଶକ୍ତିମୟୀ ମହାସଂଘ'ର ମା'ମାନେ ଅଧିକ ସ୍ୱାବଲମ୍ବୀ ହୋଇପାରିଛନ୍ତି । ଏଥିରେ ୭ଟି ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟାମାନେ ଆଉଟ୍‌ଲେଟ୍ ଦାୟିତ୍ୱ ତୁଲାଉଛନ୍ତି । ଆହୁରି ମଧ୍ୟ କେନ୍ଦ୍ରାପଡ଼ା, ବାରିପଦା, ଭଦ୍ରକ ଓ ଅନୁଗୋଳ ଆଦି ସ୍ଥାନକୁ ପୁଷ୍ଟିଶସ୍ୟରୁ ପ୍ରସ୍ତୁତ ସାମଗ୍ରୀ ପଠାଉଛନ୍ତି । ଲୋକଙ୍କ ପସନ୍ଦ ପାଲଟିଛି ଏହିସବୁ ଖାଦ୍ୟ ସାମଗ୍ରୀ । ଏବେ ମହିଳାମାନେ ଆର୍ଥିକଭାବେ ସ୍ୱଚ୍ଛଳ ହେବା ସହ ସ୍ୱାବଲମ୍ବନର ରାହା ପାଇଛନ୍ତି । ମାସକୁ ଲକ୍ଷାଧିକ ଟଙ୍କା ରୋଜଗାର କରି ଏହି ସ୍ୱୟଂ ସହାୟକ ଗୋଷ୍ଠୀର ମା'ମାନେ ସଫଳତାର ପଥରେ ଆଗେଇ ଚାଲିଛନ୍ତି । ଏହା କେବଳ 'ଓଡ଼ିଶା ମିଲେଟ୍ସ ମିଶନ' ଓ ମିଶନ ଶକ୍ତି ଯୋଗୁଁ ସମ୍ଭବ ହୋଇପାରିଛି ।

ଓଡ଼ିଶା ମିଲେଟ୍ସ ମିଶନ

❖ ❖ ❖



# ‘ଦିବ୍ୟଜ୍ୟୋତି’ର ପ୍ୟାରିସ୍ ଯାତ୍ରା ବୁଝାଇ କହିଛି ମାଣ୍ଡିଆ କଥା

**ଭେଷଜ ଚୌଧୁରୀ**




ଦିନ ଥିଲା ମହିଳାମାନେ ଘରର ଚାରିକାନ୍ଥ ମଧ୍ୟରେ ରହି କେବଳ ଘର କାମରେ ନିୟୋଜିତ ଥିଲେ । ଧୀରେ ଧୀରେ ସମୟର ପରିବର୍ତ୍ତନ ସହ ସେମାନେ ଘରର ଚାରିକାନ୍ଥ ମଧ୍ୟରୁ ବାହାରି ପୁରୁଷଙ୍କ ସହ କାନ୍ଧରେ କାନ୍ଧ ମିଳାଇ ପ୍ରତ୍ୟେକ କାର୍ଯ୍ୟରେ ଯୋଗ ଦେବା ସହ ପ୍ରତିଟି କ୍ଷେତ୍ରରେ ନିଜ ଦକ୍ଷତାକୁ ପ୍ରତିପାଦନ କରି ପ୍ରମାଣ କରିପାରିଛନ୍ତି ଯେ ସେମାନେ ମଧ୍ୟ ପୁରୁଷଙ୍କଠାରୁ କୌଣସି କମ୍ ନୁହଁନ୍ତି ।

ସେହିପରି ସୁନ୍ଦରଗଡ଼ ଜିଲ୍ଲାର ଝିରାପାଣି ଗାଁର ୧୦ଜଣ ମହିଳାଙ୍କୁ ନେଇ ୨୦୦୯ ମସିହାରେ ଗଠିତ ହୋଇଥିଲା ‘ଦିବ୍ୟଜ୍ୟୋତି ସ୍ୱୟଂ ସହାୟକ ଗୋଷ୍ଠୀ’ । ପ୍ରଥମେ ମହିଳାମାନେ ଧୂପ, ଆଚାର, ମୁଢ଼ି ଏବଂ ଛତୁଆ ଆଦି ତିଆରି କରିବା ସହ ଅନ୍ୟାନ୍ୟ ଛୋଟ ବଡ କାମରେ ନିୟୋଜିତ ଥିଲେ । ସଫଳତା ପାଇବାର ଇଚ୍ଛାଶକ୍ତି ଆଗରେ ବାଧକ ସାଜିଥିଲା ସୁଯୋଗ । ଅନେକ ପରିଶ୍ରମ କରି ମଧ୍ୟ ଉଚିତ ମୂଲ୍ୟ ପାଇପାରୁନଥିଲେ । କିନ୍ତୁ ସମୟକ୍ରମେ ପୁଷ୍ଟିଶସ୍ୟର ପୁନରୁଦ୍ଧାର ପାଇଁ ୨୦୧୭ ମସିହାରେ ରାଜ୍ୟ ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ ହୋଇଥିବା ଓଡ଼ିଶା ମିଲେଟ୍ସ ମିଶନ ମାଧ୍ୟମରେ ସେମାନଙ୍କ ପାଇଁ ସୃଷ୍ଟି ହେଲା ପରିବର୍ତ୍ତନର ସୁଯୋଗ, ଯାହା ମହିଳାମାନଙ୍କ ପାଇଁ ଏକ ବରଦାନଠାରୁ କମ୍ ନଥିଲା ।

ମିଶନ ଶକ୍ତି ଓ ଓଡ଼ିଶା ମିଲେଟ୍ସ ମିଶନ ତରଫରୁ ସୁନ୍ଦରଗଡ଼ ଜିଲ୍ଲାରେ ପୁଷ୍ଟିଶସ୍ୟର ପ୍ରୋତ୍ସାହନ ଏବଂ ଏଥିରୁ ପ୍ରସ୍ତୁତ ବିଭିନ୍ନ ଖାଦ୍ୟକୁ ନେଇ ହୋଇଥିବା ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ‘ଦିବ୍ୟଜ୍ୟୋତି ସ୍ୱୟଂ ସହାୟକ ଗୋଷ୍ଠୀ’ର ମହିଳାମାନେ ସାମିଲ ହୋଇଥିଲେ । ଯେଉଁଥିରେ ସେମାନଙ୍କୁ ପୁଷ୍ଟିଶସ୍ୟଭିତ୍ତିକ ଖାଦ୍ୟ, କାଫେ ଓ ଆଉଟ୍‌ଲେଟ୍‌ର ପରିଚାଳନା ଉପରେ ତାଲିମ ଦିଆଯାଇଥିଲା । ତାଲିମ ପାଇ ସେମାନେ ପୁଷ୍ଟିଶସ୍ୟଭିତ୍ତିକ ଖାଦ୍ୟକୁ ନିଜେ ପ୍ରସ୍ତୁତ କରିବା ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ମିଶନ ଶକ୍ତି ଓ ଓଡ଼ିଶା ମିଲେଟ୍ସ ମିଶନ ତରଫରୁ ୨୦୨୧ ମସିହାରେ ‘ମିଲେଟ୍ ଶକ୍ତି କାଫେ’ର ପରିଚାଳନା ଦାୟିତ୍ୱର ସୁଯୋଗ ପାଇଲେ । ଧୀରେ ଧୀରେ କାମ କରିବା ଫଳରେ ସେମାନେ ଅଧିକ ଲାଭପ୍ରଦ ହେବା ସହ ରୋଜଗାରକ୍ଷମ ହୋଇପାରିଛନ୍ତି । ବର୍ତ୍ତମାନ ସେମାନେ ପୁଷ୍ଟିଶସ୍ୟରୁ ୪୦ ପ୍ରକାରର କୁକିଜ୍ ସମେତ ମାଣ୍ଡିଆ ବରା, ପିଠା, ଦୋସା, ଖେଚୁଡ଼ି, ବିରିୟାନି ଆଦି ପ୍ରସ୍ତୁତ କରି ଲୋକପ୍ରିୟତା ହାସଲ କରିଛନ୍ତି ।

ଏନେଇ 'ଦିବ୍ୟଜ୍ୟୋତି ସ୍ୱୟଂ ସହାୟକ ଗୋଷ୍ଠୀ'ର ସମ୍ପାଦିକା ପ୍ରେମା ଦାସ କୁହନ୍ତି ଯେ 'ପୂର୍ବରୁ ମାଣ୍ଡିଆରୁ କେବଳ ଜାଉ ହୁଏ ବୋଲି ଜାଣିଥିଲୁ । କିନ୍ତୁ ଓଡ଼ିଶା ମିଲେଟ୍ସ ମିଶନର ପ୍ରଶିକ୍ଷଣ କାର୍ଯ୍ୟକ୍ରମ ପରେ ପୁଷ୍ଟିଶସ୍ୟର ପ୍ରକାରଭେଦ ଏବଂ ଏଥିରୁ ପ୍ରସ୍ତୁତ ହୋଇପାରୁଥିବା କୁକିଜ୍, ବିସ୍କୁଟ, ପିଠା, ମିକ୍ସଚର୍ ଏବଂ ଅନ୍ୟାନ୍ୟ ଖାଦ୍ୟ ବିଷୟରେ ଜାଣିବାକୁ ପାଇଲୁ । ପରେ ଏହାକୁ ନିଜେ ପ୍ରସ୍ତୁତ କଲୁ । ଏହାର ଚାହିଦା ଦିନକୁ ଦିନ ବଢ଼ିବାରେ ଲାଗିଲା । ପୂର୍ବରୁ ଆମେ ୪ହଜାରରୁ ୫ହଜାର ଟଙ୍କା ପର୍ଯ୍ୟନ୍ତ ରୋଜଗାର କରୁଥିଲୁ । କିନ୍ତୁ ବର୍ତ୍ତମାନ ବର୍ଷକୁ ଦେଢ଼ କୋଟି ଟଙ୍କା ରୋଜଗାର କରୁଛୁ । ଏଥିପାଇଁ ବିଭିନ୍ନ ସ୍ତରରେ ପ୍ରଶଂସା ସାଉଁଟିବା ପରେ ଏହାକୁ ଆମେ ଆମ ମୁଖ୍ୟ ବ୍ୟବସାୟ ଭାବେ ଆପଣେଇଛୁ ଏବଂ ଯେଉଁଠି ଆମେ ନିଜେ ଏହି କାର୍ଯ୍ୟ ପାଇଁ ତାଲିମ ନେଉଥିଲୁ, ବର୍ତ୍ତମାନ ସେଠି ଆମେ ଅନ୍ୟ ମହିଳାମାନଙ୍କୁ ମଧ୍ୟ ତାଲିମ ପ୍ରଦାନ କରୁଛୁ ।

କେବଳ ଏତିକି ନୁହେଁ ବରଂ 'ଦିବ୍ୟଜ୍ୟୋତି ସ୍ୱୟଂ ସହାୟକ ଗୋଷ୍ଠୀ'ର ମହିଳାମାନେ ପ୍ୟାରିସଠାରେ ଆୟୋଜିତ ଅନ୍ତର୍ଜାତୀୟ ଖାଦ୍ୟ ସମ୍ମିଳନୀ ସିଆଲ୍-୨୦୨୨, ଗୋଆରେ ହୋଇଥିବା ଖାଦ୍ୟ ପ୍ରଦର୍ଶନୀ ଏବଂ ଦିଲ୍ଲୀରେ ଆୟୋଜିତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା-୨୦୨୨ରେ ପୁଷ୍ଟିଶସ୍ୟରୁ ପ୍ରସ୍ତୁତ ବିଭିନ୍ନ ଖାଦ୍ୟକୁ ନେଇ ଅଂଶଗ୍ରହଣ କରିବାରେ ସୁଯୋଗ ପାଇଥିଲେ । ଏହା ସହ 'ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ-୨୦୨୨'ରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ''ଶ୍ରେଷ୍ଠ ସ୍ୱୟଂ ସହାୟକ ଗୋଷ୍ଠୀ'' ଭାବେ ପୁରସ୍କୃତ ହୋଇଥିଲେ ।

ଯାହାଫଳରେ ଆଜି ଏହି ସ୍ୱୟଂ ସହାୟକ ଗୋଷ୍ଠୀ କେବଳ ସ୍ଥାନୀୟ ଅଞ୍ଚଳରେ ନୁହେଁ ବରଂ ଦେଶ ବିଦେଶରେ ମଧ୍ୟ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବାରେ ସଫଳ ହୋଇପାରିଛନ୍ତି ।

ଓଡ଼ିଶା ମିଲେଟ୍ସ ମିଶନ

❖ ❖ ❖






ଓଡ଼ିଶା ମିଲେଟ୍ସ ମିଶନ ଦେଖାଇଛି ରାହା,
କାନ୍ଧରେ କାନ୍ଧ ମିଳାଇ ଆଗେଇ ଚାଲିଛନ୍ତି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ମା' ।

